


# ବିଲେଇ ନାନୀର ପରିବାର

ଏମ୍. ଡ଼ି. ଚତୁର୍ବେଦୀ

ନେହେରୁ ବାଳ ପୁସ୍ତକାଳୟ

# ବିଲେଇ ନାନୀର ପରିବାର

ଏମ୍. ଡି. ଚତୁର୍ବେଦୀ

ଅନୁବାଦ : ଚଉଧୁରୀ ହେମକାନ୍ତ ମିଶ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ବିଲେଇ ନାମର ପରିବାରଟି ବ୍ୟାପକ । ବିଲେଇଜାତୀୟ ପଶୁ କହିଲେ ପୃଥିବୀର ଅନେକ ପଶୁଙ୍କୁ ବୁଝାଏ । ଆମ ଦେଶରେ ଦେଖାଯାଉଥିବା ବାଘ, ସିଂହ, କେନ୍ଦୁଆ ଓ ଚିତାବାଘ ଭଳି ଏହି ପରିବାରର ଅଳ୍ପ କେତେକ ପଶୁଙ୍କ ବିଷୟରେ ଏହି ପୁସ୍ତିକାରେ ଲେଖା ଯାଇଅଛି । ଲେଖକ ଶ୍ରୀ ଏମ୍. ଡ଼ି. ଚତୁର୍ବେଦୀ ତାଙ୍କ ସମୟରେ ଜଣେ ବିଖ୍ୟାତ ଶିକାରୀ ଭାବରେ ନାମ ଅର୍ଜ୍ଜନ କରିଥିଲେ । ଏହି ପରିବାରର ଶ୍ରେଷ୍ଠ ବଡ଼ ବିଭିନ୍ନ ସଭ୍ୟଙ୍କ ମେଳରେ ଉତ୍ତର ପ୍ରଦେଶର ଜଙ୍ଗଲମାନଙ୍କରେ ସେ ପ୍ରାୟ ୩୦ ବର୍ଷ ଅତିବାହିତ କରିଥିଲେ । ବନ୍ୟଜନ୍ତୁଙ୍କ ସହିତ ତାଙ୍କର ଦୀର୍ଘ ଅନୁଭୂତି ଉପରେ ଭିତ୍ତିକରି ସେ ୧୯୬୮ ମସିହାରେ ଏହି ପୁସ୍ତିକାଟି ଲେଖିଥିଲେ ।

ISBN 81-237-2375-X

ପ୍ରଥମ ପ୍ରକାଶ 1972 (ଶକାବ୍ଦ 1894)
ଷଷ୍ଠ ମୁଦ୍ରଣ 1998 (ଶକାବ୍ଦ 1920)

The Cat Family *(Oriya)*
ଟ. 8.50
ଆଲୋକଚିତ୍ର : ୱାଇଲ୍ଡ ଲାଇଫ୍ ସୋସାଇଟି,
କାଶିନାଥ ଶେର ଜଙ୍ଗ୍ ସିଂହ, ଦେବନାଥ ଓ ମାରଭାଙ୍କ ସୌଜନ୍ୟରୁ ।

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ,
ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ବାଘ

ବାଘକୁ ସମସ୍ତଙ୍କର ଡର । ତା ନାଁ ଶୁଣିଲେ ଡରରେ ଦେହ ଶିତେଇଉଠେ । ଯଦିଓ ବାଘକୁ ନେଇ କେତେ ଗପ ଶୁଣିବାକୁ ମିଳେ, ତା ବିଷୟରେ କିନ୍ତୁ ଖୁବ କମ୍ କଥା ଜଣାଯାଇଛି । ଖୁବ କମ୍ ଲୋକ ବାଘର ଗୋଟାଏ ସଠିକ୍ ବର୍ଣ୍ଣନା ଦେଇପାରିବେ । ସିଂହ, କେନ୍ଦୁଆ, ଚିତା ବା ଏପରି କି ହାୟନାକୁ ବି ସମସ୍ତେ ସେଇ 'ବାଘ' କହୁଥାନ୍ତି । ଖାଲି ନିରକ୍ଷର ଗାଉଁଲି ଲୋକ ନୁହନ୍ତି, ସହରର ଶିକ୍ଷିତ ଲୋକ ବି ସେଇ ଭୁଲ୍ କରିବା ଦେଖାଯାଏ ।

ଏଇ ଭୁଲ୍ କରିବା ପଛରେ ଅନେକ କାରଣ ରହିଛି । ଗୋଟିଏ କାରଣ ହେଲା, ଭାରତବର୍ଷରେ ଖୁବ୍ କମ୍ ବାଘ ବାକି ରହିଛନ୍ତି ଏବଂ ଏମାନେ ବି କେବଳ ଦୂର ଜଙ୍ଗଲରେ ମିଳିବେ । ଆଉ ଗୋଟିଏ କାରଣ, ବାଘ କେବେହେଲେ ଦିନ ଆଲୁଅରେ ତା ଗୁହାରୁ ନ ବାହାରିବା ଯୋଗୁଁ ତାକୁ କେହି ଦେଖିପାରନ୍ତି ନାହିଁ ।

ବାଘ, କେବଳ ଆକାରକୁ ଛାଡ଼ିଦେଲେ, ବିଲକୁଲ୍ ବିରାଡ଼ି ପରି । ତା' ଦେହଟା ସେଇମିତି ଚିକ୍କଣ, ପାହୁଲ ସେଇମିତି ମାଉଁସିଆ, ନଖ ସେଇମିତି ମୋଟା, ଟାଣୁଆ ଓ

ଜଭଟା ସେଇମିତ ଖଦଂଦଢ଼ଆ । ତାର ସେହ୍ନପରି ଦୃଷ୍ଟି ଶକ୍ତି, ଘ୍ରାଣଶକ୍ତି ଓ ଶ୍ରବଣଶକ୍ତି ରହିଛି । ଠିକ୍ ବଗ୍ରଢ଼ପର ସେ ନଃଶବ୍ଦରେ ଓ ସୁନ୍ଦରଭାବେ ଚ୍ଚଲେ ସଇଡାଙ୍ଗ ମିଶେଇ । ବଗ୍ରଢ଼ ପରି ସେ ଏକା ରହିବାକୁ ଭଲ ପାଏ । ରାତିରେ ଶିକାର କରେ ଓ ମାଉଁସ ଖାଇବାକୁ ଭଲ ପାଏ । ସେ ସଙ୍ଗ ରହେ ଓ କ୍ଷିପ୍ରଭାବେ ଗତି କରିପାରେ । ଆମ ଭାରତରେ ବଲେଇକୁ ଯେ ବାଘର ମାଉସୀ କୁହନ୍ତି, ଏଥିରେ ଆଉ ଆଶ୍ଚର୍ଯ୍ୟ କଣ ? କଥାରେ କହନ୍ତି, ବାଘ ନଦେଖିଲେ ବଲେଇ ଦେଖ ।

କହନ୍ତି, ମାଉସୀ ତା ପୁରୁଷକୁ ସବୁ ଶିଖାଇଲା, ଖାଲି ଗଛରେ ଚଢ଼ିବା ବଦ୍ୟାଟି ଛଡ଼ା । ଏ କଥା ସତ ନୁହେଁ; କାରଣ ବାଘ ଯଦିଓ ଚିତା ପରି ସହଜରେ ଗଛ ଚଢ଼ିପାରେନା, ଦରକାର ପଡ଼ିଲେ ସେ ଗଛରେ ଚଢ଼େ । ନଇବଢ଼ିବେଳେ ଦେଖିବାକୁ ମିଳେ ଯେ ବାଘ ଗଛ ଉପରେ ବସି ଆତ୍ମରକ୍ଷା କରିଛି ।

ବାଘ କେତେ ପ୍ରକାରର, ତାର ଚ୍ଚଲଚଲଣ କଥା ପରେ ଜାଣିବା—ଆଗ ଦେଖିବା, ସେ କୋଉଠି କୋଉଠି ଥାଏ । ଉତ୍ତର ବା ଦକ୍ଷିଣ ଆମେରିକାରେ ବାଘ ନାହାନ୍ତି, ଅଷ୍ଟ୍ରେଲିଆରେ ନାହାନ୍ତି; ଏପରିକି ସିଂହ, ଚିତା ଆଦି ହିଂସ୍ରଜନ୍ତୁଙ୍କ ସ୍ୱଦେଶ ଆଫ୍ରିକାରେ ମଧ୍ୟ ଦେଖିବାକୁ ମିଳନ୍ତିନି । କଥିତ ଅଛି ଯେ ବାଘର ମୂଳ ଜନ୍ମସ୍ଥାନ ହେଲା ଉତ୍ତର ରୁଷିଆ । ସେଠୁ ସେ ପୂର୍ବଦିଗକୁ, ଅର୍ଥାତ୍ କୋରିଆ, ଚୀନ୍, ବର୍ମା, ଥାଇଲାଣ୍ଡ, ଭିଏତ୍‌ନାମ୍, ମାଲୟ, ଜାଭା, ସୁମାତ୍ରା ଓ ବାଲିଦ୍ୱୀପକୁ ଆସିଲା । ସିଂହଳରେ ବାଘ ନାହାନ୍ତି । ଏଥିରୁ ଜଣାଯାଏ, ସିଂହଳ ଦ୍ୱୀପ ଓ ଭାରତ ମଧ୍ୟରେ ଯେଉଁ ସେତୁଟି ଥିଲା, ବାଘ ଭାରତକୁ ଆସିଲାବେଳକୁ ସେଇଟି ସମୁଦ୍ରରେ ବୁଡ଼ିଯାଇ ସାରିଲାଣି ।

ବାଘ ଭାରତକୁ ଆସିଲା ବର୍ମାଆଡ଼ୁ । ସେ ଧୀରେ ଧୀରେ ଆସାମ, ବଙ୍ଗଦେଶ ଓ ହିମାଳୟର ପାଦଦେଶର ପାର୍ବତ୍ୟ ଇଲାକାରେ, ମଧ୍ୟଭାରତ ଓ ଦକ୍ଷିଣଭାରତରେ ଆସ୍ଥାନ ଜମାଇନେଲା । ଗଭୀର ଜଙ୍ଗଲରେ ଉପତ୍ୟକା, ଗୁମ୍ଫା, ଜଙ୍ଗଲଦେରା ପାହାଡ଼, ନଦୀ ତୀର ଓ ଝରଣାକୂଳରେ ତାକୁ ଦେଖିବାକୁ ମିଳେ । ହିମାଳୟରେ ୨୪୦୦ ଠାରୁ ୨୭୦୦ ମିଟର ଉଚ୍ଚତାଯାଏ ବାଘ ଦେଖାଯାନ୍ତି ।

ଭୌଗୋଳିକ ପରିସ୍ଥିତି ଅନୁସାରେ ବାଘର ଚେହେରା ଓ ଚ୍ଚଲଚଲନ ହୋଇଥାଏ । ବାଘର ମୁଖ୍ୟ ଜାତି ହେଲା :

(୧) ମାଞ୍ଚୁରିଅନ୍—କୋରିଆ ଜାତୀୟ : ଏ ହେଲ ସବୁଠୁଁ ବଡ଼ ଓ ସବୁଠୁଁ ଅଧିକ ବଳବାନ୍ । ଏହାର ମୋଟା ଚମଡ଼ା ଓ ଲୁମ ତାକୁ ଥଣ୍ଡା ଓ ବରଫରୁ ରକ୍ଷା କରେ । ତାର ପଟାରିଆ ଦାଗଗୁଡିକ ଖୁବ ଫିକା ରଙ୍ଗର ।

(୨) କାସ୍ପିୟାନ୍ ସାଗର ଜାତୀୟ : କାସ୍ପିୟାନ୍ ସାଗରର ପାଖ ଅଞ୍ଚଳ, କକେସସ୍ ପର୍ବତ ଓ ଉତ୍ତର ଇରାନ୍‌ରେ ରହେ । ତା ଲୁମସବୁ ଛୋଟ ଛୋଟ ଓ ଗହଳିଆ । ଭାରତୀୟ ବାଘ ସଙ୍ଗେ ତାର ଖୁବ୍ ସାମ୍ୟ ଅଛି ।

(୩) ଜାଭା-ସୁମାତ୍ରା ଜାତୀୟ : ଜାଭା, ସୁମାତ୍ରା, ବାଲି ଓ ଅନ୍ୟାନ୍ୟ ଇଣ୍ଡୋନେସୀୟ ଦ୍ୱୀପରେ ରହେ । ଏ ବାଘ ଭାରତୀୟ ବାଘ ତୁଳନାରେ ଛୋଟ ହେଲେ ବି ତାର ରଙ୍ଗ ଅଧିକ ଉଜ୍ଜ୍ୱଳ । ତାର ମୁହଁ ଅନ୍ୟ ବାଘ ତୁଳନାରେ ଧଳା ।

(୪) ଭାରତୀୟ ଜାତୀୟ : ଏହି ବାଘକୁ ରୟାଲ୍ ବେଙ୍ଗଲ୍ ଟାଇଗର୍ କହନ୍ତି; କାରଣ ଇଷ୍ଟ ଇଣ୍ଡିଆ କମ୍ପାନୀର ଗୋରା ଶିକାରୀଗଣ ପ୍ରଥମେ ବଙ୍ଗପ୍ରଦେଶରେ ଏହି ଜନ୍ତୁକୁ ଭେଟିଥିଲେ ।

କେବଳ ମାଞ୍ଚୁରିଆନ୍ ବାଘକୁ ଛାଡ଼ିଦେଲେ ଅନ୍ୟ ଜାତିମାନଙ୍କ ଭିତରେ ଖୁବ୍ କମ୍ ତଫାତ୍ ରହିଛି । ବାଘ ମାଞ୍ଚୁରିୟାର ଘୋର ଶୀତରେ ବଞ୍ଚେ; ମଧ୍ୟଭାରତର ଟାଣ ଖରାରେ, ହିମାଳୟର ପାଦଦେଶର ପାର୍ବତ୍ୟ ଜଙ୍ଗଲର ଗୁଳ୍ମଗୁଳରେ ଏବଂ ଆସାମ ଓ କେରଳ ଭଳି ପ୍ରଦେଶର ପ୍ରଚୁର ବର୍ଷା ଭିତରେ ରହିପାରେ । ଉତ୍ତରାଖଣ୍ଡର ବରଫ, ତରାଇର ସନ୍ତସନ୍ତିଆ ଭୂମି, ସୁନ୍ଦରବନର ଲୁଣିଆ ହାଉଆ ଓ ଆସାମର ବର୍ଷାଧୂଆ ଜଙ୍ଗଲ ସବୁଠି ସେ ଆରାମରେ ରହେ ।

ବାଘର ହଳଦିଆ ସୁନେଲି ରଙ୍ଗ, ତହିଁରେ କଳା କଳା ପଟାରିଆ ଦାଗ ସିଧା ତାର ମେରୁଦଣ୍ଡଠାରୁ ପେଟ ଆଡ଼କୁ ଦେହର ଦୁଇପଟେ ରହିଥାଏ । ପଟାରିଆ ଦାଗ ଗାଢ଼ କଳାଠାରୁ ମାଟିଆଯାକେ ବିଭିନ୍ନ ରଙ୍ଗର ହୋଇଥାଏ ଏବଂ ଦେହର ନିମ୍ନାଂଶ ଆଡ଼କୁ ରଙ୍ଗଟି ହାଲୁକା ହୋଇଥାଏ । ବୟସ ବଢ଼ିଲେ ବାଘର ପଟାରିଆ ଦାଗଗୁଡ଼ିକ କ୍ରମେ ଫିକା ଓ ଛଡ଼ା ଛଡ଼ା ହୋଇଯାଏ, କେତେକ ବାଘଙ୍କର ସାମନା ଅଂଶରେ ଖୁବ୍ କମ୍ ପଟାରିଆ ଦାଗ ଥାଏ ।



ବାଘଛୁଆର ଚମଡ଼ାଟି ଫୁଲ୍‌ଫୁଲ୍‌ଆ ଦିଶେ ଓ ଏହା ବାଲିରଙ୍ଗର । ବୟସ ବଢ଼ିବା ସଙ୍ଗେ ସଙ୍ଗେ ରଙ୍ଗଟି ଉଜ୍ଜ୍ୱଳ ଓ ପଟାଳିଆ ଦାଗଗୁଡ଼ିକ ପରିଷ୍କାର ଓ ଗାଢ଼ ହୁଏ । ବାଘୁଣୀର ରଙ୍ଗ ବାଘଠାରୁ ବେଶୀ ସଫା । ଶୀତଦିନରେ ବେଶି ଲୁମ ଗଜୁରେ ଓ ରଙ୍ଗଟି ଅଧିକ ଉଜ୍ଜ୍ୱଳ ହୁଏ । ଗରମ ଦିନବେଳକୁ କେତେକ ଲୁମ ଝଡ଼ିଯାଏ ଓ ପଟାଳିଆ ଦାଗଯାକ ଉଜ୍ଜ୍ୱଳତା ହରାଏ । ବାଘର ଜିଭ ଟାଣ ଓ ଧଳା ଧଳା । କାନ ଦୁଇଟି ପଛଆଡ଼ୁ କଳା, କେବଳ ମଝିରେ ଧଳା ଦାଗଟିଏ ଥାଏ ।

ଦେହର ରଙ୍ଗ ଓ ଦାଗ ବାଘକୁ ଶତ୍ରୁଠାରୁ ରକ୍ଷା କରିଥାଏ । ଖଇରିଦନେ ଶୁଖିଲା ପତ୍ରର ହଳଦିଆ ରଙ୍ଗ ସାଙ୍ଗରେ, ଅନ୍ଧାରୁଆର ରଙ୍ଗ ସାଙ୍ଗରେ ଏପରିଭାବରେ ମିଶିଯାଏ ଯେ, ସେ ଜନ୍ତୁକୁ ଖୋଜି ପାଇବା ହିଁ ଦୁଷ୍କର ହୋଇପଡ଼େ । ଥରେ ମୁଁ ପିଲିଭିତ୍ ଜଙ୍ଗଲରେ ଗୋଟିଏ ଯାଉଥିବା ବାଘକୁ ଖୋଜୁଥିଲି । ହାତୀଉପରେ ବସି ଆମେ ଗୁରିଜଣ ବନ୍ଧୁ ଗୁରିଆଡ଼କୁ ନିରୀକ୍ଷଣ କରୁଥାଉ; କିନ୍ତୁ କିଛି ଦେଖିପାରୁନଥାଉ । ଯେତେବେଳେ ବାଘଟା ହଠାତ୍ ଗୋଟିଏ ବୁଦା ଉହାଡ଼ରୁ ଡେଇଁ ଆସି ଆମ ହାତୀର ମଥା ଉପରେ ପଡ଼ିଲା ସେତେବେଳେ ଯାଇ ଆମେ ତାକୁ ଦେଖିଲୁ ।

ସବୁ ଜାତର ବାଘଙ୍କ ଭିତରେ ବିଖ୍ୟାତ ହେଲା ପୂର୍ବତନ ରେଓ୍ବା ରାଜ୍ୟର ଧଳା ବାଘ । ଧଳା ବାଘ ଧରାହୋଇ ଚିଡ଼ିଆଖାନାରେ ବି ଛୁଆ ଦେଇଛି ଓ ସେ ଛୁଆକୁ ପାଳିପୋଷି ବଡ଼ କରାହୋଇଛି । ଧଳା ବାଘର ଦେହଟା ମସିଆ ଧଳା, ତା' ଉପରେ ମାଟିଆ ପଟା-ପଟା ଦାଗ ଥାଏ ।

ବିରାଡ଼ି ବା କେନ୍ଦୁଆ ଯେପରି ପାଣି ଭଲପାଆନ୍ତିନି, ବାଘର ସେପରି ପାଣିପ୍ରତି ଅନାଗ୍ରହ ନଥାଏ । ଖରାଦିନେ ଗ୍ରେଟ ଗ୍ରେଟ ପୋଖରୀ ବା ପାଣିମନ୍ଦାରେ ବାଘ ଦେହ ଥଣ୍ଡା କରୁଥିବାର ବି ଦେଖିବାକୁ ମିଳେ । ସେମାନେ ପହଁରିବାରେ ବି ଖ୍ୟାତି ଅର୍ଜନ କରିଛନ୍ତି—ନେପାଳୀ ବାଘ ଶାରଦା କେନାଲ ପହଁରି ଭାରତକୁ ଆସିବାର ଶୁଣାଯାଏ ।

ବିରାଡ଼ିଜାତି ତାଙ୍କର ପରିଚ୍ଛନ୍ନତା ପକାଶେ ଖ୍ୟାତି ଅର୍ଜନ କରିଛନ୍ତି । ବାଘ ବି ନିଜକୁ ବେଶ୍ ସଫା ରଖେ । ତଥାପି ତାର ଗୋଟାଏ ନିଜସ୍ବ କଡ଼ା ଗନ୍ଧ ଅଛି; ଯହିଁରୁ ତା ଶିକାରୀ ବାଘ ଆସୁଛି ବୋଲି ଆଗରୁ ଜାଣିପାରେ । ବାଘର ନଖ ବି ବିଲେଇ ନଖ ପରି ତାର ମାଂସଳ ପାହୁଲ ଭିତରେ ଲୁଚିରହିଥାଏ । ବାଘ ସେଗୁଡ଼ିକ ଗଛଗଣ୍ଡିରେ ଘଷି ଧାର କରୁଥିବାର ଦେଖାଯାଏ ।

ବାଘର ଶୁଣିବା ଶକ୍ତି ଖୁବ୍ ତୀକ୍ଷ୍ଣ । ନାକରୁ ସୂକ୍ଷ୍ମ ଶବ୍ଦ ଟିକିଏ ହେଲେ ସେ ଜାଣିପାରେ ଓ ସେଠୁ ପଳାଇଯାଏ ଚଞ୍ଚଳ ପଦକ୍ଷେପରେ ।

କାଠିଟାଏ ଖଡ଼୍ କରି ଭାଙ୍ଗିଲେ ବି ସେ ନିଜର ଶିକାର ଛାଡ଼ିଦେବ, ଶୋକରେ ରହିବ

ଦେହର ରଙ୍ଗ ଓ ଦାଗ ବାଘକୁ ଶତ୍ରୁଠାରୁ ରକ୍ଷା କରିଥାଏ । ଖରାଦିନେ ଶୁଖିଲା ପତ୍ରର ହଳଦିଆ ରଙ୍ଗ ସାଙ୍ଗରେ, ଅଣ୍ଟାବୁଦାର ରଙ୍ଗ ସାଙ୍ଗରେ ଏପରିଭାବରେ ମିଶିଯାଏ ଯେ, ସେ ଜନ୍ତୁକୁ ଖୋଜି ପାଇବା ହିଁ ଦୁଷ୍କର ହୋଇପଡ଼େ । ଥରେ ମୁଁ ପିଲିଭିଟ୍ ଜଙ୍ଗଲରେ ଗୋଟିଏ ଘାଇଲା ବାଘକୁ ଖୋଜୁଥିଲି । ହାତୀଉପରେ ବସି ଆମେ ଚାରିଜଣ ବନ୍ଧୁ ଚାରିଆଡ଼କୁ ନିରୀକ୍ଷଣ କରୁଥାଉ; କିନ୍ତୁ କିଛି ଦେଖିପାରୁନଥାଉ । ଯେତେବେଳେ ବାଘଟା ହଠାତ୍ ଗୋଟିଏ ବୁଦା ଉହାଡ଼ରୁ ଡେଇଁ ଆସି ଆମ ହାତୀର ମଥା ଉପରେ ପଡ଼ିଲା ସେତେବେଳେ ଯାଇ ଆମେ ତାକୁ ଦେଖିଲୁ ।

ସବୁ ଜାତିର ବାଘଙ୍କ ଭିତରେ ବିଖ୍ୟାତ ହେଲା ପୂର୍ବତନ ରେୱା ରାଜ୍ୟର ଧଳା ବାଘ । ଧଳା ବାଘ ଧରାହୋଇ ଚିଡ଼ିଆଖାନାରେ ବି ଛୁଆ ଦେଇଛି ଓ ସେ ଛୁଆକୁ ପାଳିପୋଷି ବଡ଼ କରାହୋଇଛି । ଧଳା ବାଘର ଦେହଟା ମଇଳିଆ ଧଳା, ତା' ଉପରେ ମାଟିଆ ପଟା-ପଟା ଦାଗ ଥାଏ ।

ବିରାଡ଼ି ବା କେନ୍ଦୁଆ ଯେପରି ପାଣି ଭଲପାଆନ୍ତିନି, ବାଘର ସେପରି ପାଣିପ୍ରତି ଅନାଗ୍ରହ ନଥାଏ । ଖରାଦିନେ ଛୋଟ ଛୋଟ ପୋଖରୀ ବା ପାଣିମନ୍ଦାରେ ବାଘ ଦେହ ଥଣ୍ଡା କରୁଥିବାର ବି ଦେଖିବାକୁ ମିଳେ । ସେମାନେ ପହଁରିବାରେ ବି ଖ୍ୟାତି ଅର୍ଜନ କରିଛନ୍ତି—ନେପାଳୀ ବାଘ ଶାରଦା କେନାଲ ପହଁରି ଭାରତକୁ ଆସିବାର ଶୁଣାଯାଏ ।

ବିରାଡ଼ିଜାତି ତାଙ୍କର ପରିଚ୍ଛନ୍ନତା ସକାଶେ ଖ୍ୟାତି ଅର୍ଜନ କରିଛନ୍ତି । ବାଘ ବି ନିଜକୁ ବେଶ୍ ସଫା ରଖେ । ତଥାପି ତାର ଗୋଟାଏ ନିଜସ୍ୱ କଡ଼ା ଗନ୍ଧ ଅଛି; ଯହିଁରୁ ତା ଶିକାର ବାଘ ଆସୁଛି ବୋଲି ଆଗରୁ ଜାଣିପାରେ । ବାଘର ନଖ ବି ବିଲେଇ ନଖ ପରି ତାର ମାଂସଳ ପାହୁଲା ଭିତରେ ଲୁଚିରହିଥାଏ । ବାଘ ସେଗୁଡ଼ିକ ଗଛଗଣ୍ଡିରେ ଘଷି ଧାର କରୁଥିବାର ଦେଖାଯାଏ ।

ବାଘର ଶୁଣିବା ଶକ୍ତି ଖୁବ୍ ତୀକ୍ଷ୍ଣ । ନାକରୁ ସୁଙ୍ଘା ଶବ୍ଦ ଟିକିଏ ହେଲେ ସେ ଜାଣିପାରେ ଓ ସେଠୁ ପଳାଇଯାଏ ଚଞ୍ଚଳ ପଦକ୍ଷେପରେ ।

କାଠିଟାଏ ଖଡ଼୍ କରି ଭାଙ୍ଗିଲେ ବି ସେ ନିଜର ଶିକାର ଛାଡ଼ିଦେବ, ଝୋପରେ ରହିବ



ଘନା; କିନ୍ତୁ ବିପଦ ପାଖରେ ରହୁନଥିଲା । ଥରେ ଗୋଟିଏ ବାଘ ସେ ମାରିଥିବା ଶିକାରର ମଡା ପାଖକୁ ଆଉ ଲେଉଟିଲାନି; କାରଣ ତାକୁ ଅପେକ୍ଷା କରିଥିବା ଶିକାରୀ ଜଣକ ଗୋଟିଏ ବହି ପଢ଼ୁଥିଲା; ଆଉ ସେ ବହିର ପୃଷ୍ଠା ଓଲଟାଇବାର ଶବ୍ଦ ବାଘ ଶୁଣିପାରିଥିଲା ।

ଟାଣ ଖରାକୁ ବାଘ ବାହାରେନା । ଦିନଟା ସାରା ସେ ଶୋଇ ଶୋଇ ବିତାଏ । କେବଳ ସଞ୍ଜବୁଡ଼କୁ ତାର ବଡ଼ ବଡ଼ ଗୋଲ ଗୋଲ କଳାଡୋଳା ଯୋଡ଼ିକ ପୁରାପୁରି ଖୋଲିଥାଏ । ଫ୍ଲାସ୍ ଲାଇଟ୍‌ର ଆଲୁଅରେ ତା ଆଖି ଦି'ଟା ଜଳନ୍ତା ଅଙ୍ଗାର ପରି ଦପ୍‌ଦପ୍ ଦିଶୁଥାଏ ।

ଯଦିଓ ବାଘର ଶୁଙ୍ଘିବା ଶକ୍ତିଟା କୁକୁରପରି, ବିଲୁଆ କି ହେଟାପରି ସେତେ ପ୍ରବଳ

ନୁହେ । ଅନ୍ଧାରରେ କେବଳ ଶୁଙ୍ଘି ଶୁଙ୍ଘି ନିଜର ଶିକାର ସେ ବାହାର କରିପାରେ ବୋଲି ଶୁଣାଯାଏ ।

ବାଘ ଅତି ସ୍ୱଳ୍ପଖିରେ ଆଉ ଚୁପ୍‌ଚାପ୍ ଶିକାର କରେ । ଗର୍ଜନଟା କେବଳ ସେ ତା ଯୋଡ଼ିକୁ ଡାକିବାଲାଗି କରିଥାଏ । ବାଘୁଣୀ ବି ନିଜ ଛୁଆଙ୍କୁ ଶିକାରକୁ ଡାକିବାଲାଗି ଗର୍ଜେ ।

ବାଘର ପ୍ରିୟ ସ୍ଥାନ ହେଉଛି ସେ ରହୁଥିବା ଅଞ୍ଚଳର ସବୁଠୁଁ ଉଚ୍ଚା ଜାଗା । ଶୀତଦିନେ ପଥର ଉପରେ ଶୋଇରହି ସେ ଖରା ପୋଉଁଥିବାର ବି ଦେଖାଯାଏ ।

ବାଘ ସେପରି ଯୁଦ୍ଧପ୍ରିୟ ଜନ୍ତୁ ନୁହେଁ; ଆଲୁଅ, ଶବ୍ଦ ଓ ଭିଡ଼ଭାଡ଼ରୁ ସେ ଦୂରେଇ ରହେ । ଖୁବ୍ ଦରକାର ନ ପଡ଼ିଲେ ସେ କାହାରିକି ଆକ୍ରମଣ କରେନା । କେବଳ ଘାଇଲା ହେଲେ ବା ବାଘୁଣୀ ନିଜର ଛୁଆଙ୍କୁ ଜଗିଥିଲାବେଳେ ହିଂସ୍ର ହୋଇଥାଏ । ପ୍ରକୃତରେ କେତେକ ଶିକାରୀ କହନ୍ତି ଯେ ବାଘ ବିଲୁଆଠୁଁ ଅଧିକ ଭୀରୁ । ଖାଲି ଘାଇଲା ହେଲେ ତାର ସବୁ ସାହସ ସେ ଦେଖାଏ । ଏପରିକି ଗାଈଚରାଳି ଗହଡ଼ ପିଲାଏ ବି ତାକୁ ପାଟିତୁଣ୍ଡ କରି ଘଉଡ଼େଇ ଦେଇପାରନ୍ତି । ଜଙ୍ଗଲର ଜନ୍ତୁ-ମାନେ ବାଘ ଆସିବାର ଦେଖିଲେ କି ତା ଗନ୍ଧ ପାଇଲେଇ ଅନ୍ୟ ଜନ୍ତୁମାନଙ୍କୁ ସାବଧାନ କରାଇ



ଦିଅନ୍ତି ଏବଂ ଜଙ୍ଗଲଟା ସାରା ତାଙ୍କ ବୋବାଳିରେ କମ୍ପିଉଠେ; ଫଳରେ ବାଘ ପଳାଇବାକୁ ବାଧ୍ୟ ହୁଏ । ହନୁମାଙ୍କଡ଼ର ଉତ୍ତେଜିତ କିଚିରିମିଚିରି, ପାତିମାଙ୍କଡ଼ର ଚିଁ-ଚିଁ, ସମ୍ବର ଓ ଚିତାଲଙ୍କର ଲମ୍ବା ହମ୍ବାରଡ଼ି କୋକିଶିଆଳିର ବୋବାଳି, ବଣକୁକୁଡ଼ା ଓ ମୟୂରଙ୍କ ଚିତ୍କାର ସଙ୍ଗେ ମିଶେ । ବାରହା ବାଘକୁ ଗୋଡ଼ାଏ । ବଣୁଆ ମଇଁଷି ତା



ଜାବୁଡ଼ରୁ ଖସିପଳାଇପାରେ ।

ସାଧାରଣତଃ ଯଦିଓ ବାଘର ନିଆଁ ଓ ଆଲୁଅକୁ ଡର; କିନ୍ତୁ ମଣିଷଖିଆ ବାଘ ଅନେକ ସମୟରେ ମଣିଷ-ଶିକାର ପାଇବା ଆଶାରେ ଏପରିକି ନିଆଁ ବା ଆଲୁଅ ପାଖକୁ ବି ଧାଇଁ ଆସିଥାଏ ।

ବାଘର ସ୍ୱଭାବ ଧୀର, ଚତୁର ଓ ହୁସିଆର୍ । ସେ ଆଙ୍ଗୁଠି ଟିପିଟିପି, ପାହୁଲକେ ମିଟରେ ଧ୍ୱପାବରେ ବାଟ ଚାଲେ । ତାର ସାମନା ଗୋଡ଼ରେ ପାଞ୍ଚଟି ଲେଖାଏଁ ଓ ପଛ ଗୋଡ଼ରେ ଚାରିଟି ଲେଖାଏଁ ନଖ ଥାଏ । ପୁଣି ସାମନା ଗୋଡ଼ ଦଉଟି ପଛ ଗୋଡ଼ଠାରୁ ମୋଟ ମୋଟ; କିନ୍ତୁ ସାମନା ପାହୁଲ ଦଉଟି ବେଶୀ ଓଜନଆଁ, ଦେଖିବାକୁ ବଡ଼ ଓ ପଛ ପାହୁଲଠାରୁ ବେଶୀ ଗୋଲ । ବେଳେ ବେଳେ ପଛ ପାହୁଲର ଦାଗ ସାମନା ପାହୁଲର ଦାଗକୁ ଏପରି ଘୋଡ଼ାଇଦିଏ ଯେ ଆଉ ଚହ୍ଲା ଯାଏନା; ପାଦ ଚହ୍ଣଟି କୌଣସି ଦୁଇଗୋଡ଼ିଆ ଜନ୍ତୁର ବୋଲି ମନେହୁଏ । ପାଦଚହ୍ଣରୁ ବାଘର ଠଉର କରିବା ସହଜ; ଏପରିକି ତାର ଆକାର ଓ ସେ ବାଘ ନା ବାଘୁଣୀ କହିବା ସମ୍ଭବ ହୁଏ । ବାଘ ତା ଲାଙ୍ଗୁଡ଼କୁ ବାଆଁରୁ ଡାହାଣକୁ ହଲାଏ; କିନ୍ତୁ ରାଗିଗଲେ କି ଖୁସି ହେଲେ ଲାଙ୍ଗୁଡ଼ଟି ଅଚଳ ରହେ ।

ବାଘ ମାଂସାହାରୀ ଜନ୍ତୁ । ଯେକୌଣସି ରକମର ମାଂସ, ଯେକୌଣସି ଅବସ୍ଥାରେ ସେ ଖାଇପାରେ । ମାଂସ ଛଡ଼ା ସେ କିଛି ଖାଏନା; କେବଳ ବେଳେ ବେଳେ ଶାଗୁଆ ଘାସ କିଛି ଖାଇଦିଏ ତାର ଔଷଧ ଗୁଣ ପକାଣେ । ବାଘ ଯେ ଖାଲି ନିଜେ ମାରିଥିଲେ ଯାଇ ଜନ୍ତୁର ମାଂସ ଖାଇବ, ଏପରି ଭୁଲ ଧାରଣା ଲୋକଙ୍କର ରହିଛି । ପ୍ରକୃତରେ କିନ୍ତୁ ସିଏ ମାରିଥାଉ, କିମ୍ବା କାହିଁବଗରୁଁରେ ବାଘ ଖାଇପାରେ । ଏପରିକି ଯୋଉ ମାଂସରେ ପଚ ପୋକ ଲାଗିଯାଇଥିବେ, ତାକୁ ବି ସେ ମହାଆନନ୍ଦରେ ଖାଏ ବୋଲି ଜଣାଯାଇଛି ।

ଖାଇବା ବେଳ ହେଲେ ଜଙ୍ଗଲର ସବୁ ପ୍ରାଣୀ ତା ପାଟିକି ସୁଆଦ । ତାର ଖାଲି ଡର ପଞ୍ଝାଏ ବଣୁଆ କୁକୁର ଯୋଉଠି ଏକାଠି ଥିବେ । ବାଘ, ବିଲୁଆ ବି ତାକୁ ହଇରାଣ କରନ୍ତି । ଏକୁଟିଆ ବିଲୁଅଟିଏ ବାଘ ପଛରେ ମାହାଲିଆ ଭୋଜନ ପାଇବା ଆଶାରେ ଗୋଡ଼ାଇଥାଏ । ଭୋକିଲା ବାଘ ଯେକୌଣସି ଜନ୍ତୁକୁ ଖାଇପାରେ । ନଈବଢ଼ି ସମୟରେ ସେ ମାଛ, ଡେଙ୍ଗ କି ବେଙ୍ଗ ଖାଏ । ବାଘ ଏପରିକି ଆଉ ଗୋଟିଏ ବାଘକୁ ବି ଖାଇପାରେ । କାରଣ ବାଘ ତା ଛୁଆକୁ ଖାଇଦିଏ ବୋଲି ବାଘୁଣୀ ଛୁଆଙ୍କୁ ବାପଠାରୁ ଦୂରେଇ ରଖିଥାଏ ।

କେତେକେ ଭୁଲରେ ବିଶ୍ୱାସ କରନ୍ତି ଯେ ବାଘ ମାରିଥିଲେ ସେ ଶିକାରକୁ ଅନ୍ୟ ଜନ୍ତୁ

ଛୁଅନ୍ତିନ । ପ୍ରକୃତରେ କିନ୍ତୁ ସୁବିଧା ପାଇଲେଇ ସବୁ ବଣଜନ୍ତୁ ବାଘର ଶିକାରକୁ ଖାଇଦିଅନ୍ତି । ପ୍ରଥମଥର ଖାଇବା ପରେ ପରେ ବାଘ ତାର ଖାଇବା ଜାଗାଟା ବଦଳାଏ । ପେଟ ଭର୍ତ୍ତି କରି ଖାଇବା ପରେ ସେ ବାକି ଅଂଶଟା ଲୁଚାଇଦିଏ । ବାଘ ଏକାଥରେ ୨୫ରୁ ୩୦ କିଲୋଗ୍ରାମ୍ ମାଉଁସ ଖାଇପାରେ ।

ବାଘ ତାର ଶିକାର ଉପରକୁ ହୁ'ପରି ଡେଇଁପଡ଼େ ନାହିଁ । ସେ ଛପି ଛପି ତାର ପିଛା ଧରେ; ଆଉ ଖୁବ୍ ପାଖକୁ ଆସିଗଲେ ତା ଉପରକୁ ଝାମ୍ପଦିଏ । ଆଗ ସେ ବେକର ପଛପଟ ବା ଗଳାଆଡ଼ୁ ଆରମ୍ଭ କରେ ଆକ୍ରମଣ । ବାଘର ଖାଇବାଟା ସେତେ ପରିଷ୍କାର, ଆଉ କୋଉ ଜନ୍ତୁର ନୁହେଁ । ସେ ଆଗ ଜନ୍ତୁର ପଛଆଡ଼ୁ ଖାଇବା ଆରମ୍ଭ କରେ ଓ ତାର ଜଙ୍ଘ ଓ ତଳପେଟ ପାଖରୁ ନେଇ ବାଳ, ଚମଡ଼ା, ହାଡ଼, ମାଂସ ପର୍ଯ୍ୟନ୍ତ ସବୁ ଖାଏ; ଖାଲି ଅନ୍ତଟି ସେ ଛାଡ଼ିଦିଏ ଓ ଭଲକରି ବାହାର କରି ରଖେ ।

ବାଘ ଏକୁଟିଆ ଶିକାର କରିବାକୁ ବାହାରେ । ତା ଶିକାରର ଗୋଟାଏ ନିର୍ଦ୍ଦିଷ୍ଟ ସମୟ ଅଛି । କେବଳ ଭୋକବେଳେ ସେ ଜନ୍ତୁ ମାରେ । ସେ ସାଧାରଣତଃ ମାସକୁ ତିନି ବା ଚାରି ଥର ଖାଏ ।

ବାଘର ସାଧାରଣତଃ ମଣିଷକୁ ଭାରି ଡର—ମଣିଷର ଉଚ୍ଚତା, ତାର ପୋଷାକ ଓ ତାର ଦୁଇ ଗୋଡ଼କୁ ସେ ଡରି ଥାଏ; ବେଳେ ବେଳେ କିନ୍ତୁ ବାଘ ମଣିଷଖିଆ ହୋଇଯାଏ । ବୁଢ଼ା, ଦୁର୍ବଳ ବା ଘାଇହେଲା ବାଘ ତା ସାଧାରଣ ଶିକାରକୁ ଧରିବାକୁ କଷ୍ଟ ପାଏ । ଏତିକିବେଳେ ଯେବେ ତା ହାବୁଡ଼ରେ ମଣିଷ ପଡ଼ିଯାଏ, ତାର ଖାଇବାର ଅଭ୍ୟାସ ବଦଳାଇ ସେ ମଣିଷଖିଆ ହୋଇଯାଏ । ମଣିଷଖିଆ ବାଘ ଗାଈଗୋରୁଙ୍କୁ ଛୁଇଁବେ ନାହିଁ; ଗଉଡ଼ଙ୍କ ପଛରେ ଧାଇଁବେ । ମଣିଷଖିଆ ବାଘୁଣୀ ଛୁଆଙ୍କର ବି ମଣିଷ-ମାଉଁସ ପ୍ରତି ଟାଣ ହୋଇଯାଏ । ମଣିଷଖିଆ ବାଘ ମଣିଷର ମୁଣ୍ଡଟି ଖାଏନା । କୁକୁରଙ୍କ ପରି ବାଘଙ୍କର ବି ଜଳାତଙ୍କ ରୋଗ ହୁଏ ଏବଂ କେତେକ ଘଣ୍ଟା ଭିତରେ ସେମାନେ ଅନେକ ଲୋକଙ୍କୁ ଆକ୍ରମଣ କରନ୍ତି । ମଣିଷଖିଆ ବାଘ ମଣିଷ ଓ ତାର ଚଳଚଳଣ ବିଷୟରେ ସବୁକଥା ଜାଣିଥାଏ । ବାଟୋଇଙ୍କ ଅଜାଣତରେ ତା ଉପରକୁ କୁଦି ପଡ଼ିବା, ଘର ଭିତରକୁ ପଶିଯାଇ ତା ଭିତରୁ ଲୋକ ଟେକିନେବା, ଦଶ କି କୋଡ଼ିଏ ଜଣ ଲୋକଙ୍କ ଭିତରୁ ଗୋଟିକୁ ଟାଣିନେଇ ଯିବା ଆଦି ବିଦ୍ୟା ସେମାନେ

ଶିଖିନଥନ୍ତି । ମଣିଷଖିଆ ବାଘ ହଠାତ୍ କୌଣସି ସୂଚନା ନଦେଇ ପଛରୁ ଶିକାର ଉପରକୁ କୁଦିପଡ଼ନ୍ତି ।

ବାଘର ଆକାର ବିଷୟ ନେଇ ଅଦ୍ଭୁତ ଧାରଣା ଲୋକଙ୍କ ମନରେ ରହିଛି । ଶିକାରୀମାନେ ଅନେକ ସମୟରେ ଗୋଟାଏ ଦୁଇଟା ମିଟର ବଢ଼ାଇ ଏତେ ଲମ୍ବର ବାଘ ସେମାନେ ମାରିଛନ୍ତି ବୋଲି କହିଥାନ୍ତି । ଆଗକାଳରେ କୌଣସି ମହାରାଜା ଯେବେ ବାଘ ମାରୁଥିଲେ, ତାଙ୍କ ଚାକରବାକର ତାଙ୍କୁ ଖୁସି କରିବାକୁ ଲମ୍ବଟା ବଢ଼େଇ କରି କହୁଥିଲେ । ମାପ ଫିତାଟାକୁ ଲମ୍ବେଇବା ବା ଭୁଲ୍ କରି ପଢ଼ିବାଟା ଶିକାରୀମାନଙ୍କ ଭିତରେ ଖୁବ୍ ସାଧାରଣ କଥା ଥିଲା । ଛ' ମିଟର ପର୍ଯ୍ୟନ୍ତ ଲମ୍ବର ବାଘ ମରିହୋଇଛି ବୋଲି ଦାବୀ କରାଯାଇଛି । ପ୍ରକୃତରେ କିନ୍ତୁ ବାଘର ଲମ୍ବ ହାରାହାରି ତିନି ବା ସଉଆ ତିନି ମିଟରରୁ ଅଧିକ ହୁଏନାହିଁ । ବାଘକୁ ସାଧାରଣତଃ ତାର ମୁଣ୍ଡଠାରୁ ଲାଙ୍ଗୁଡ଼ର ଅଗଯାଏ ମପାହୁଏ । ବାଘଠାରୁ ବାଘୁଣୀ ½ ମିଟର ଲମ୍ବରେ ଛୋଟ ହୁଏ । ବାଘର ଉଚ୍ଚତା ୧ ମିଟରଠାରୁ ଟିକିଏ ବେଶୀ; ଓଜନ ୨୯୦ କିଲୋଗ୍ରାମ୍ ।

ବାଘୁଣୀ ପ୍ରାୟ ୧୦୦ ଦିନ ଛୁଆକୁ ଗର୍ଭରେ ଧରେ ଓ ସାଧାରଣତଃ ତିନିଟି ଛୁଆ ଏକାଠି ଜନ୍ମଦିଏ । ନବଜାତ ସନ୍ତାନର ଓଜନ ଦେଢ଼ କିଲୋଗ୍ରାମ୍ ଭଳି ହୋଇଥାଏ । ବାଘୁଣୀ ଛୁଆଙ୍କୁ ଗୁହାଭିତରେ, ପଥରସନ୍ଧିରେ ବା ଗଛ କୋରଡ଼ରେ ଲୁଚାଇ ରଖେ । ସେ ଛୁଆଙ୍କ ବେକପାଖ ଚମଡ଼ା କାମୁଡ଼ି ଧରି ତାଙ୍କୁ ବୋହିନିଏ । କାହାରିକି ସେ ପାଖରେ ପୂରାଇ ଦିଏନାହିଁ । ନଅ ଦିନରେ ବାଘଛୁଆର ଆଖି ଫିଟେ; ହେଲେ ସେ ଆଉ ଦୁଇ ସପ୍ତାହଯାଏ ଭଲକରି ଦେଖିପାରେ ନାହିଁ । ବହୁତ ଦିନଯାଏ ଛୁଆଗୁଡ଼ିକ ମାଆ ପାଖେ ପାଖେ ରହିଥାନ୍ତି । ବାଘୁଣୀ ପୁଣି ଥରେ ଗର୍ଭବତୀ ହେଲେ ଯାଇ ତାର ଆଗ ଗର୍ଭର ଛୁଆଙ୍କୁ ଛାଡ଼େ । ଶିକାରୀମାନେ କହନ୍ତି ବାଘୁଣୀ ନିଜର ପ୍ରକୃତି ଅନୁସାରେ ପ୍ରତି ତିନି ବର୍ଷରେ ଥରେ ଗର୍ଭିଣୀ ହୁଏ । ଶିକାର କରିବା ଓ ଜନ୍ତୁ ମାରିବା ଇତ୍ୟାଦିରେ ସେ ଛୁଆଙ୍କୁ ତାଲିମ୍ ଦିଏ । ପୂର୍ଣ୍ଣ-ଆକାରର ହେବାକୁ ବାଘକୁ ୫ ବର୍ଷ ଲାଗେ ।

ବାଘ ଶିକାର ଯଥାର୍ଥରେ ସବୁଠାରୁ ବିପଜ୍ଜନକ ଖେଳ୍‌ଭାବରେ ଗଣାହୁଏ । ଆଗକାଳେ ଖଣ୍ଡା, ତୀର ବା ବର୍ଚ୍ଛା ସାହାଯ୍ୟରେ ବାଘ ମାରିବାକୁ ହେଉଥିଲା । ଗାଁ ଗଣ୍ଡାର ଲୋକ ବା



ଜଙ୍ଗଲର ଅଧିବାସୀ ଅନେକ ସମୟରେ ଗାତ ଖୋଳି ତା' ଉପରେ ଘାସ, କାଠିକୁଟା ଦେଇ ବାଘକୁ ଫନ୍ଦାରେ ପକାଉଥିଲେ । କେତେ ରକମର ଯନ୍ତ୍ର ବି ବାଘ ଧରିବାକୁ ବାହାର କରାହୋଇଥିଲା । ବେଳେବେଳେ ତାକୁ ଗୋଟିଏ ପିଞ୍ଜରା ଭିତରକୁ ଲୋଭାଇ ଆଣି ପୁଣି ବର୍ଚ୍ଛା ଦ୍ୱାରା ଆକ୍ରମଣ କରାହେଉଥିଲା । କେତେକ ଅଞ୍ଚଳରେ ବାଘ ମାରିବାଲାଗି ବିଷମିଶା ଶର ରଖିଦେଉଥିଲେ । ସୁନ୍ଦରବନ (ପଶ୍ଚିମ ବଙ୍ଗଳା)ରେ ଗଛଗୁଡ଼ିକ ଛୋଟ ଛୋଟ ହୋଇଥିବାରୁ ତା ଉପରେ ମଞ୍ଚା ବାନ୍ଧିବା କଷ୍ଟ । ତେଣୁ ଶିକାରୀମାନେ ପିଞ୍ଜରା ଭିତରେ ବସି ଲୁହାବାଡ଼ର ଜାଲିପଞ୍ଜା ଭିତରୁ ବାଘ ଉପରକୁ ଗୁଳି ଚଳାନ୍ତି ।

ଯେଉଁ ଦିନଠାରୁ ରାଇଫଲ୍ ଓ ବନ୍ଧୁକ ଲୋକପ୍ରିୟ ହୋଇଛି, ବାଘ ଶିକାରର ଧରଣ ବଦଳିଛି । ଶିକାରୀ ଯେତେବେଳେ ବାଘର ପାଦଚିହ୍ନ ଦେଖିବ, ସେ ଗୋଟିଏ ବର୍ଷକର ମଇଁଷି ବାଛୁରୀ ନେଇ ସନ୍ଧ୍ୟାବେଳେ ଗୋଟିଏ ଖମ୍ବ ବା ଗଛପନ୍ଦ ସାଙ୍ଗରେ ବାନ୍ଧି ରଖିବ । ଏହି 'ଗ୍ୱର'ଟି ବେକରୁ ନୁହେଁ, ଗୋଡ଼ରୁ ବନ୍ଧା ହୋଇଥିବ । ରାତିରେ ଯେବେ ବାଘ ସେବାଟେ ଯାଉଥିବ, ସେ ବାଛୁରୀଟିକୁ ମାରି ମଡ଼ାଟାକୁ ପାଖ ବୁଦା ଭିତରକୁ ଟାଣିନେଇ ଯିବ । ଯେବେ ବୁଦା ବେଶ୍ ଗହଳିଆ ହୋଇଥାଏ ଓ ବାଘ ଲୁଚିବା ଭଲ ହୋଇଥାଏ, ଶିକାର ପାଖରେ ବାଘ ବି ରହିଯାଏ । ପରଦିନ ବାଘକୁ ଘଉଡ଼ାଳିମାନେ ଭୟଙ୍କର ଶବ୍ଦ କରି ତାକୁ ଦୋକୁ ବାହାର କରି ଆଣନ୍ତି । ଏହା ଭିତରେ ଶିକାରୀମାନେ ମଞ୍ଚା ଉପରକୁ ବନ୍ଧୁକ ହାତରେ ଚଢ଼ିଯାଆନ୍ତି । ବାଘ ଯେମିତି ତାଙ୍କ ବନ୍ଧୁକର ରେଞ୍ଜ୍ ଭିତରକୁ ଆସିବ, ସାଙ୍ଗେ ସାଙ୍ଗେ ତାକୁ ଗୁଳି କରାହେବ ।

ବାଘକୁ ଠଉର୍ କରିବାଲାଗି ସବୁଠୁଁ ଭଲ ଉପାୟ ହେଉଛି ହାତୀପିଠିରେ ବସିବା । କେବଳ ଭଲଭାବରେ ତାଲିମ ପାଇଥିବା ହାତୀକୁ ହିଁ ଏ କାମରେ ଲଗାହୋଇପାରିବ । କେତେକ ଶିକାରୀ ମଞ୍ଚାଉପରେ ବସି ଶିକାର କରିବା ଅପେକ୍ଷା ଗୋଟିଏ ଖାତକୁ ଭଲରୂପେ ଢାଙ୍କି ତା ଭିତରେ ବସି ବାଘଶିକାର କରିବାକୁ ପସନ୍ଦ କରନ୍ତି । ବାଘକୁ ତାର ଲୁଚିବା ଜାଗାରୁ ମଞ୍ଚା ପାଖକୁ ଘଉଡ଼ାଇ ଅଣାଯାଏ ।

କିଛି ଧଳା ଜିନିଷ ଦେଖିଲେ ବାଘ ଡରେ । ତା ବାଟ ବନ୍ଦ କରିବାକୁ ହେଲେ ବା ବାଟକୁ ବଦଳାଇବାକୁ ହେଲେ ତମେ ଖାଲି ଗୋଟିଏ ଧଳା ଚଦର ହେଉ ବା ଖାଲି କାଗଜଖଣ୍ଡେ ହେଉ, ତା ବାଟରେ ବିଛେଇ ଦେଲେ ହେଲା । ଯେବେ ଆଗରୁ କେବେ ଏହି ଉପାୟ ବାଘଟି ଦେଖିଥିବ, ସେ ହୁଏତ ବୁଲିପଡ଼ିବ, ଆଗେଇବ ନାହିଁ । କେତେକ ଶିକାରୀ ତାଙ୍କ ହାତୀ ଉପରେ ବସିଥାନ୍ତି, ଆଉ ବାଘକୁ ମଞ୍ଚା ବଦଳରେ ହାତୀ ଆଡ଼କୁ ଘଉଡ଼ାଇବା ପସନ୍ଦ କରନ୍ତି । ହାତୀ ବି ଗୋଟିଏ ଚଳନ୍ତି ମଞ୍ଚାର କାମ ଦିଏ ।

ନେପାଳର ତରାଇରେ ୪୦୦ ରୁ ୫୦୦ ହାତୀଙ୍କ ଦ୍ୱାରା ବାଘକୁ ଘେରାଉ କରନ୍ତି । ଏହି ପଦ୍ଧତିକୁ ବାଘଶିକାରର ରିଙ୍ଗୱେ ( ring-way ) ପଦ୍ଧତି ବୋଲି କୁହାଯାଏ ।

ବାଘଶିକାର ଖୁବ୍ ସାବଧାନତା ଦରକାର କରେ । ଶିକାର ଯେମିତି ଆରମ୍ଭ ହୁଏ, ନାନାରକମର ବଣଜନ୍ତୁ ଲୁଚିବା ଜାଗାରୁ ବାହାରି ଆସନ୍ତି । ବାଘ ସେମାନଙ୍କର ଅନୁସରଣ କରେ । ଖୁଲ୍ଲା ବାଘ ଉପରକୁ ଗୁଳି ମାରିବା ବିପଜ୍ଜନକ; କାହିଁକିନା, ଘାଇଲା ବାଘ ଶିକାରୀର ଜୀବନ ବିପନ୍ନ କରିପାରେ । ଗୁଳି ବାଜିଲେ ବାଘ ଗର୍ଜନ କରେ । ସାଧାରଣତଃ ଗୋଟିଏ ଶିକାର ଭିତରେ ଗୋଟିଏ ବାଘ ବାହାରିପାରେ; କିନ୍ତୁ ବେଳେ ବେଳେ ଏକାଧିକ ବି ବାହାରି ପାରନ୍ତି ।

ମଞ୍ଚାଟି ସାଧାରଣତଃ ଦୁଇ ମିଟର ବା ତା ଠାରୁ ବେଶୀ ଉଚ୍ଚତାର ତିଆରି କରାହୁଏ ଓ ତାକୁ ଭଲରକମ ଢାଙ୍କି ଦିଆହୁଏ ।



ଏକ ପର୍ଯ୍ୟବେକ୍ଷଣ ଲୋକ

ଗୋଡ଼ରେ ଗୁଳି ବାଘ ଶିକାରରେ କଷ୍ଟ ଯେତିକି, ‘ବିପଦ ସେତିକି ।

ସାଧାରଣତଃ ବାଘ ବେଶ୍ ଶାନ୍ତିପ୍ରିୟ ଜୀବ । ସେ ମଣିଷ ବା ଜୀବଜନ୍ତୁଙ୍କ ସଙ୍ଗେ ବେକାର ଝଗଡ଼ାରେ ପଡ଼ିବାକୁ ଚାହେଁନା; କିନ୍ତୁ ଘାଇଲା ବାଘ ବର୍ବର ହୋଇଯାଏ । ସେ ବୁଦା ପଛରେ ଲୁଚିରହି ହଠାତ୍ ଶିକାରି ଉପରକୁ କୁଦିପଡ଼େ । ଘାଇଲା ବାଘ ହାତୀ ଉପରକୁ ଡେଇଁପଡ଼ିବାକୁ କି ମଞ୍ଚା ଉପରକୁ ଚଢ଼ିଯିବାକୁ କୁଣ୍ଠିତ ହେବ ନାହିଁ ।

ଥରେ ଜଣେ ଇଞ୍ଜିନିୟର୍ ଗୋଟିଏ ଘାଇଲା ବାଘକୁ ଖୋଜି ବାହାରିଲେ । ହଠାତ୍ ଯେମିତି ଆକାଶରୁ ବାଘଟା ହାତୀ ଉପରକୁ ଡେଇଁପଡ଼ିଲା । ହାତୀ ଟଳମଳ ହୋଇଗଲା ଏବଂ ଇଞ୍ଜିନିୟରଙ୍କୁ ଫୋପାଡ଼ି ଦେବାରୁ ସେ ଠିକ୍ ବାଘର ପିଠି ଉପରେ ପଡ଼ିଲେ । ଏତିକି କରି ହାତୀଟା ପଳାଇଲା । ବାଘ ଇଞ୍ଜିନିୟରଙ୍କୁ କାନ୍ଧପାଖରୁ ଧରି ନେଇ ଜଙ୍ଗଲ ଭିତରକୁ ଟାଣିନେଲା । କେତେ ମିନିଟ୍ ଅନ୍ତରରେ ସେ ନିଶ୍ୱାସ ନେବାକୁ ଅଟକୁଥାଏ । କିନ୍ତୁ ଇଞ୍ଜିନିୟର ଯେବେ ଟିକିଏ ହଲ୍‌ଚଲ୍ ହେଉଥିଲେ, ବିରାଡ଼ି ମୂଷାକୁ ପଂଝା ଦେଖାଇବା ପରି ତାଙ୍କୁ ଧରିପକାଉଥାଏ । ଯେତେବେଳେ ସେମାନେ ଜଙ୍ଗଲର ଘଞ୍ଚ ଜାଗାରେ ପହଞ୍ଚିଗଲେ, ବାଘଟା ମଣିଷର ଏତେ ପାଖରେ ବସିରହିଲା ଯେ, ତାର କଲିଜା ଦୁକୁଦୁକି ଯାକେ ଇଞ୍ଜିନିୟର ଶୁଣିପାରୁଥିଲେ । ମୃତ୍ୟୁଭୟ ଏପରି ଅଧିକ ଥିଲା ଯେ ଯୋଷରୀ ହେବାରେ ଯେତେ କଷ୍ଟ ସବୁ ଭୁଲି ହୋଇଗଲା । ଇଞ୍ଜିନିୟର ତାଙ୍କ ବେଲ୍‌ଟରେ ଥିବା ପିସ୍ତଲ କଥା ଭାବିଲେ, କିନ୍ତୁ ହଲ୍‌ଚଲ୍ ହେଲେ ବାଘର ଜାବୁଡ଼-ଭୟ ଥିଲା । ଶେଷକୁ ଯଥେଷ୍ଟ ସାହସ ସଞ୍ଚୟ କରି ସେ ପିସ୍ତଲଟା ବାହାର କଲେ । ବାଘ ଯଦିଓ ହାଉଁକିନା ଶବ୍ଦଟାଏ କରିଥିଲା, ତା ମୁହଁଟା ସେପାଖକୁ ଥିଲା । ପିସ୍ତଲର ନଳୀଟା ଠିକ୍ ବାଘର କଲିଜା ପାଖରେ ଦେଇ ଦୁଇଥର ଫାୟାର୍ କଲେ ଇଞ୍ଜିନିୟର୍ । ବାଘର ଗର୍ଜନଟା ସେ ଶୁଣିଥିବା ତାଙ୍କର ମନେ ଥିଲା—ତାପରେ ଡାକ୍ତରଖାନାରେ ତାଙ୍କର ଚେତା ହୁଏ ।

ଘାଇଲା ବାଘ ଯେତେବେଳେ ହାତୀ ଉପରକୁ ଡେଇଁପଡ଼ୁଥିବ କି ଗୋଟାଏ ମଣିଷକୁ ଜାବୁଡ଼ିଧରିଥିବ, ସେତେବେଳେ ତାକୁ ଗୁଳି କରିବା ଆଦୌ ଉଚିତ ନୁହେଁ । ବାଘ ଏତେ ଜଲ୍‌ଦି ଚଳେ ଯେ, ତାକୁ ଛାଡ଼ି ବନ୍ଧୁକର ଗୁଳି ହାତୀ ବା ମଣିଷକୁ ଆଘାତ କରିବାର ଅଧିକ ସମ୍ଭାବନା ରହିଛି । ଏପରି ଅବସ୍ଥାରେ ସବୁଠୁ ଭଲ ହେଉଛି ଶୂନ୍ୟକୁ ଗୁଳି ଛାଡ଼ି ବାଘକୁ ଡରେଇଦେବା । ବନ୍ଧୁକର ଭୟଙ୍କର ଶବ୍ଦରେ ସେ ଡରି ପଳାଇଯିବ ।



ନିରୀକ୍ଷଣ-ସ୍ତମ୍ଭ, ଗିର୍‌ ଜଙ୍ଗଲ,

ବାଘ କାମୁଡ଼ା-ରାମ୍ପୁଡ଼ା ଖାଇ ଖୁବ୍ କମ୍ ଲୋକ ବଞ୍ଚିପାରନ୍ତି । ରାମ୍ପୁଡ଼ା ସ୍ଥାନ ପାଚି ବିଷେଇଯାଏ । ବେଳେ ବେଳେ ଗୁଳି ବାଜିଲେ ବାଘ ମରେନା, ଖାଲି ଅଚେତ ହୋଇଯାଏ । ମରିଯାଇଛି ବୋଲି ଭାବି ତା ପାଖକୁ ଯାଇ କେତେ ଶିକାରୀ ପ୍ରାଣ ହରାଇଛନ୍ତି ।

ବେଳେ ବେଳେ ଘାଇଲା ବାଘ ଜନବସତିକୁ ବି ଚାଲିଆସେ । ଥରେ ସନ୍ଧ୍ୟାବେଳେ କୁଣ୍ଡୁଲରେ ଗୋଟିଏ ବାଘୁଣୀ ଆସି ଶ୍ରୀ ଭେଙ୍କଟରାମ୍ ଆୟାରଙ୍କ ବଙ୍ଗଳା ଭିତରକୁ ପଶି,

ସମ୍ମୁଖ ପୃଷ୍ଠାରେ x ସ୍ଥାନରେ ବାଘ ଛପି ରହିଛି ।



ତାଙ୍କ ଶୋଇବା ଘରକୁ ଯାଇ ଟେବୁଲ୍ ତଳେ ପଶିରହିଥିଲା । ଯେତେବେଳେ ଶ୍ରୀ ଆସ୍ତାର୍ ସେଠି କାମ କରିବାକୁ ବସିଲେ, ବାଘୁଣୀ ଦେହରେ ତାଙ୍କ ଗୋଡ଼ ବାଜିଗଲା । ଭୟରେ ହାଉଳି ଖାଇ ସେ ଚିତ୍କାର କରି ବାହାରି ଆସିଲେ । ଆଗ କେହି ତାଙ୍କ କଥା ବିଶ୍ୱାସ କଲେ ନାହିଁ । ଶେଷରେ ଯେତେବେଳେ ବାଘୁଣୀଟାକୁ ଗୁଳି କରାହେଲା ଓ ତା ଚମଡ଼ା ବାହାର କରାଗଲା, ଜଣାପଡ଼ିଲା ଯେ ଆଗରୁ ସେ ଘାଉଲା ହୋଇଥିଲା ।

ଯେବେ ମଣିଷ ସ୍ଥିର ହୋଇ ରହିବ, ବାଘ ତାକୁ ଆକ୍ରମଣ କରିବ ନାହିଁ । ମଣିଷ ନିଃଶ୍ୱାସ ବନ୍ଦ କରିଦେଲେ ବାଘ ତାକୁ ଖୋଜି ପାଏ ନାହିଁ । ହାତୀ ବା ଓଟ ଉପରେ ବସିଥିଲେ ବା ମୋଟର ଗାଡ଼ି ଚଳାଉଥିଲେ ବାଘ ଘାବରେଇ ଯାଏ । ଅନ୍ୟ ପଶୁଙ୍କ ପରି ବାଘ ବି ମଣିଷ ଦେଖି ବିବ୍ରତ ହୋଇପଡ଼େ ।

ଥରେ ସାହାରନ୍‌ପୁର ପାଖରେ ମୁଁ ଓ ମୋ ବାଣୁଅ ଦଲିପ ସିଂହ ଗୋଟିଏ ଗୁଣ୍ଡୁଣି ପାହାଡ଼ ଉପରେ ବସିକରି ବାଘକୁ ଡାକିଥାଉ । ତଳର କେନାଲକୂଳରେ ଆମେ ତାର ପାଦଚିହ୍ନ ଦେଖିଆସିଥାଉ । ଆମେ ଭାବିଥିଲୁ, ବାଘ ସେଇ ବାଟରେ ଫେରିବ; କିନ୍ତୁ ସତରେ କଣ ହେଲା ? ବାଘ ଠିକ୍ ଆମ ମୁଣ୍ଡଉପରେ, ଗୁଣ୍ଡୁଣି ପାହାଡ଼ରେଇ ଥିଲା । ସେ ଅନ୍ୟ ଆଡ଼କୁ ଗୁହିଁ ବସିଥିଲା, ଆଉ ତାର ଲାଙ୍ଗୁଡ଼ ହଲଉଥିଲା, ଯାହାକି ଦଲିପ ସିଂହର ପଗଡ଼ିରେ ବାଜିଲା । ବାଘ ଅନ୍ୟ ଆଡ଼କୁ ବାହାରିଗଲା—କିନ୍ତୁ ଯୋଉ ଦୁଇମିନିଟ୍ ଆମେ ତାର ଅତି ପାଖରେ ଥିଲୁ, ସେଇଟା ଦୁଇ ଯୁଗପରି ଲାଗିଥିଲା ।

ବାଘର ଚମଡ଼ା, ହାଡ଼, ଦାନ୍ତ, ନଖ, ମାଉଁସ ଓ ଚର୍ବି ସବୁ କିଛୁ ଦରକାରରେ ଆସେ । କେତେ ଲୋକ ଭାବନ୍ତି ବାଘମାଉଁସ ଖାଇଲେ ସେମାନେ ବାଘପରି ସାହସୀ ଓ ବଳବାନ୍ ହେବେ । ବାଘର ଚର୍ବି ବାତରୋଗରେ ଔଷଧ ହୁଏ । ବାଘର ନଖକୁ ରୁପାରେ ବନ୍ଧାଇ କବଚ କରି ପିନ୍ଧନ୍ତି । ବାଘର କାନ୍ଧର ହାଡ଼ଟିକୁ ସୌଭାଗ୍ୟ ଦବ ବୋଲି ସୁନାରେ ବାନ୍ଧିକରି ପିନ୍ଧନ୍ତି । ବାଘଚମଡ଼ାକୁ ଗାଲିଚା ଭାବରେ ବର୍ଷ ବର୍ଷ ଧରି ବ୍ୟବହାର କରାଯାଏ । ବାଘୁଣୀର ଦୁଧ ଅନେକ ଆଖିରୋଗ ଭଲ କରେ ବୋଲି ଶୁଣାଯାଏ ।

ଭାରତରେ ଆଉ ବେଶୀ ବାଘ ନାହାନ୍ତି । କାଳେ ବାଘଜାତି ନିପାତ ହୋଇଯିବ, ସେଥିପାଇଁ ଅନେକ ରାଜ୍ୟରେ ବାଘ ଶିକାର ନିଷେଧ ହୋଇଛି । ଯେତେ ଜଙ୍ଗଲ ସଫାହୋଇ ଗୁଲିଥିବ ଏବଂ ଯେଉଁ ପଶୁମାନେ ବାଘର ସାଧାରଣ ଖାଦ୍ୟ, ସେମାନେ

ବର୍ତ୍ତମାନର ହାରରେ ନଷ୍ଟ ହୋଇଯାଉଥିବେ, ତାହେଲେ ଖୁବ୍ କମ୍ ସମୟ ଭିତରେ ଭାରତବର୍ଷରେ ଆଉ ବାଘ ମିଳିବେ ନାହିଁ ।



# ସିଂହ

ସିଂହ ଓ ବାଘ ଭିତରେ ବହୁତ ତଫାତ୍ । ସିଂହ ଦେଖିବାକୁ ଶ୍ରେଷ୍ଠ, ମାଟିଆ ଓ ତାର ପଟାଳିଆ ଦାଗ ବି ନାହିଁ । ତା ଲାଞ୍ଜ ଛୋଟା ବାଳବାଳୁଆ ଆଉ ଗ୍ରେଣ୍ଟିଆ । ଅଣ୍ଡିରା ସିଂହର ବେକ ଚାରିପଟେ ଫୁଲଫୁଲିଆ କେଶର ଥାଏ । ତା ଆକାର ଅଢ଼େଇଠାରୁ ତିନି ମିଟର ହେବ । ମାଟି ଉପରୁ ମାପିଲେ ତା କାନ୍ଧଯାକେ ମିଟରେ ଠାରୁ ଟିକେ ବେଶି ହେବ । ୧୮୦ ଠାରୁ ୨୨୫ କିଲୋଗ୍ରାମ ତାର ଓଜନ । ତା'ଛଡ଼ା ସିଂହ ବାଘପରି ଏତେ ଭୟଙ୍କର ନୁହେଁ ।

ଆମ ଦେଶରେ ସିଂହର ଅନେକ ନାମ—କେଶରୀ, କେହରୀ, ହରି, ବାବର ଶେର୍ ଇତ୍ୟାଦି । ଆଗକାଳେ ଉତ୍ତର-ଭାରତର ଓ ମଧ୍ୟ ଭାରତର ସମତଳ ଅଞ୍ଚଳରେ ତାକୁ ଦେଖିବାକୁ ମିଳୁଥିଲା ବୋଲି ଲୋକ ତା ସଙ୍ଗେ ପରିଚିତ । ବେଦ, ଶାସ୍ତ୍ର ଓ ଅନ୍ୟାନ୍ୟ ପୁରାତନ ବହିରେ କେତେ ଜାଗାରେ ସିଂହକଥା ଲେଖା ଅଛି । ସିଂହ ଦୁର୍ଗାଦେବୀଙ୍କ ବାହନ । ସେ ହେଉଛି ସାହସ ଓ ବୀରତ୍ୱର ପ୍ରତୀକ । ରାଜପୁତ ଓ ଶିଖମାନେ ତାଙ୍କ ନାମ ସଙ୍ଗରେ ସିଂହ ଯୋଡ଼ିଥାଆନ୍ତି । ସିଂହ ଆମର ଜାତୀୟ ପଶୁ । ଆମର ଜାତୀୟ ପ୍ରତୀକ ଅଶୋକସ୍ତମ୍ଭର ସେହି ସିଂହ ଚାରିଟିଙ୍କ ତଳେ ହିଁ ଆମ ଜାତିର ମୂଳମନ୍ତ୍ର—ସତ୍ୟମେବ ଜୟତେ—ସତ୍ୟର ସର୍ବଦା ଜୟ—କଥାଟି ଲେଖା ହୋଇଥାଏ ।

ସିଂହ ଭାରତବର୍ଷରୁ ପ୍ରାୟ ଲୁପ୍ତ ହୋଇଯାଇଛି । କେବଳ କେତେକ ସିଂହ ଜୁନାଗଡ଼ ପାଖର ଗିର୍ ଜଙ୍ଗଲରେ ରହିଛନ୍ତି । ଆଜି ସିଂହକୁ ମାରିବା ସବୁଠାରେ ମନା । ଏପରିକି ଆଗକାଳରେ ବି ଖାଲି ରାଜରକ୍ତ ବହନ କରୁଥିବା ରାଜପୁତ୍ରମାନେ ହିଁ ସିଂହ ଶିକାର କରି-ପାରୁଥିଲେ ।



ଆଗେ ଆଫ୍ରିକା, ପଶ୍ଚିମ-ଏସିଆ ଓ ଦକ୍ଷିଣ-ପଶ୍ଚିମ ଇଉରୋପର ସବୁଠାରେ ସିଂହ ମିଳୁଥିଲେ । କିନ୍ତୁ ୨୦୦ ବର୍ଷତଳେ ବାରୁଦ ଆବିଷ୍କାର ହେଲା; ତା ପରେ ସିଂହ ସଂଖ୍ୟା କମି କମି ଗଲା ।

ଜଣାଯାଉଛି, ବାଘ ଯେପରି ଉତ୍ତର-ପୂର୍ବ ବାଟ ଦେଇକରି ଭାରତକୁ ଆସିଥିଲା, ସିଂହ ସେହିପରି ଉତ୍ତର-ପଶ୍ଚିମ ଦିଗରୁ ଆସିଥିଲା । ସିଂହ ଆଫଗାନିସ୍ଥାନ ବାଟେ ଆସି ନଥିଲା; କିନ୍ତୁ ସିରିଆ, ଇରାନ୍, ଇରାକ୍, ବେଲୁଚିସ୍ଥାନ ଓ ସିନ୍ଧ୍ ବାଟେ ଆସିଥିଲା । ଯେତେବେଳେ ଆଲେକ୍‌ଜାଣ୍ଡରଙ୍କ ସେନା ଏଇ ବାଟ ଦେଇ ନିଜ ଦେଶକୁ ଫେରୁଥିଲେ ସେମାନେ କେତେ ଥର ସିଂହ ହାବୁଡ଼ରେ ପଡ଼ିଛନ୍ତି । ସିଂହ ବା ବାଘ କେହି ସିଂହଳକୁ ଯାଇପାରି ନାହାନ୍ତି ।

ସିଂହ ଖୋଲା, ସମତଳ ଭୂମିର ପ୍ରାଣୀ । ଯେଉଁ ସମତଳ ବଣ ଭିତରେ କୃଷ୍ଣସାର ମୃଗ, ନୀଳଗାଈ ଓ ଚଡ଼ଲ ହରିଣ ପ୍ରଭୃତି ମିଳୁଥିଲେ, ସେଠି ସିଂହ ବି ମିଳୁଥିଲେ । ତେଣୁ ସିଂହ ଭାରତବର୍ଷର, କି ବାହାରୁ ଆସିଥିଲେ କହିବା କଠିନ । ଏତିକି ଜୋର୍ ଦେଇ କହିହେବ ଯେ ସିଂହର ମୂଳ ଘର ଭାରତ ବା ଆଫ୍ରିକାର ସମତଳଭୂମି ।

ସିଂହର ବାଘଠାରୁ ଆଉ ଗୋଟିଏ ତଫାତ୍ ଯେ ସେ ବାଘ ପରି ଲୁଚିରହେ ନାହିଁ । ସେ ନିଜକୁ ଜଙ୍ଗଲର ରଜା ମନେକରେ ଓ ବେଶ୍ ଗର୍ବିତ ଭାବରେ ଘୂରିବୁଲେ । ସେ ଏକା ରହିବାକୁ ଭଲପାଏନା; ସପରିବାର ବୁଲେ । ଅଧିକାଂଶ ସମୟରେ ମାଈ ଅଣ୍ଡିରା ଦୁହେଁ ମିଶି ଶିକାର କରନ୍ତି । ଜଣେ ଅପେକ୍ଷା କରି ବସିଥାଏ, ଅନ୍ୟଟି ତା ଆଡ଼କୁ ଶିକାର ଘଉଡ଼ାଇ ଆଣେ ।

ବାଘ ଯେଉଁଠି ପ୍ରତି ପାଦ ମାପି ମାପି, ହୁସିଆର ହୋଇ ଅନ୍ଧାର ଭିତରେ ଲୁଚି ଲୁଚି ଆଗରୁ ଲୁଚାଇ ରଖିଥିବା ଶିକାର ଆଡ଼କୁ ଆସେ, ଖୁଡ୍‌ କରି ଆବାଜ ହେଲେ ଜୋରରେ ଉଭବ ପଛେ ପଳାଇଯାଏ, ସିଂହର ଏତେ ଡର ବା ଭାବନା ନାହିଁ। ସନ୍ଧ୍ୟା ହେଲେ ସେ ସପରିବାର ଶିକାରକୁ ବାହାରେ। ସେଇଥିପାଇଁ ସିଂହକୁ ମାରିବା ଏତେ କଷ୍ଟକର ନୁହେଁ। ସିଂହର ଅହଙ୍କାର ଓ ଜିଦ୍ ତାର ବିନାଶର କାରଣ।

ବାଘ ପରି ସିଂହ ବି ଯାହା ପାଇବ ତାହା ଖାଇବ। ଗାଈ, ଷଣ୍ଢ, ମଇଁଷି, ହରିଣ, ଯାହା ଉପରେ ପଂଝା ପକାଇପାରିବ, ତାକୁ ହିଁ ଗିଳିବ। ସେ ଖାଲି ମାଉଁସ ଚାହେଁ— ସେ ମାଉଁସ ଯାହାର ହୋଇଥାଉ କି ଯେମିତି ଅବସ୍ଥାରେ ଥାଉ—ତଟକା ହେଉ କି ବାସି ହେଉ; ଏକାଥରକେ ସେ ଗୋଟିଏ ପୂରା ଗାଈ ଗୋଟାପଣେ ଖାଇଯାଇପାରେ।

ବାଘ ଭଳିଆ ସିଂହ ଗଛକୁ ଡରେନା; କାରଣ ସେ ସହଜରେ ଗଛ ଚଢ଼ିପାରେ। ସିଂହର ଶ୍ରବଣଶକ୍ତି ଖୁବ୍ ପାତଳା। ଦୃଷ୍ଟିଶକ୍ତି ଟିକେ କମ୍ ବୋଲି କହନ୍ତି। ଶୁଙ୍ଘିବା ଶକ୍ତି ତ ଆହୁରି କମ୍। ସିଂହ ବେଶ୍ ଶାନ୍ତ ଓ ସେଥିପାଇଁ ପୋଷା ମାନିଥାଏ। ସେଇଥିପାଇଁ ସର୍କସର ତାଲିମ୍ ଦେବାର ଲୋକମାନେ ବାଘଠୁଁ ସିଂହକୁ ବେଶି ପସନ୍ଦ କରନ୍ତି। ସିଂହର ମଣିଷ ଦେଖିବାର ଅଭ୍ୟାସ ରହିଛି, କାରଣ ସେ ସମତଳ ଭୂମିରେ ଥାଏ। ତେଣୁ ମଣିଷକୁ ତାର ସେତେ ଡର ନାହିଁ। ବାଘ ମଣିଷର ଆକାର ଓ ଚେହେରା ଦେଖି ଡରେ ଓ ଘାଇଲା ନହେଲେ ବା ଛୁଆ ପାଖରେ ନଥିଲେ ମଣିଷକୁ ଆକ୍ରମଣ କରେନା; ତାହା ପୁଣି ମଣିଷକୁ ଖାଇବାଲାଗି ନୁହେଁ, ଖାଲି ଘଉଡ଼େଇ ଦେବାଲାଗି। ସିଂହର କିନ୍ତୁ ତା ନୁହେଁ। ସିଂହ ଅନେକ ସମୟରେ ମଣିଷଖିଆ ହୋଇଯାଏ। ଯେବେ ବଣର ଜନ୍ତୁ ବା ଗାଈଗୋରୁ ତାକୁ ମିଳନ୍ତି ନାହିଁ, ସେ ମଣିଷ ଖାଇବାକୁ ଆରମ୍ଭ କରିଦିଏ।





ମୋର ଥରେ ଗୋଟିଏ ସିଂହ ସାଥିରେ ଗୋଟିଏ ରୋମାଞ୍ଚକର ଘଟଣା ହୋଇଥିଲା। ଗିର୍ ଜଙ୍ଗଲରେ ସିଂହର ଅହଙ୍କାରର ଛବିଟିଏ ଉଠାଇବି ବୋଲି ଚେଷ୍ଟା କରୁଥିଲି, ଏତିକି ବେଳେ ଗୋଟିକର ଅତି ପାଖକୁ ଆସିଗଲି। ସେ ଗୋଟିଏ ବଳଦ ଖାଇବାରେ ବ୍ୟସ୍ତ ଥିଲା। ଗୋଟିଏ ଗୋଟିଏ କାମୁଡ଼ା ସେ ମରା ଜନ୍ତୁଟା ଦେହରେ ବସାଉଥାଏ, ମୁଁ ଗୋଟିଏ ଗୋଟିଏ ପାଦ ପକାଏ ତା ଆଡ଼କୁ। ହଠାତ୍ ମୁଁ ଗୋଟାଏ ଶୁଖିଲା କାଠି ମାଡ଼ିଦେଲି; ଆଉ ତାର କଡ଼୍ କରି ଆବାଜଟିଏ ହେଲା। ସେତିକି ଶୁଣି ସିଂହ ଖାଇବା ବନ୍ଦ





କଣଦେଇ ଉପରକୁ ଚାହିଁଲା । ସେ ମୋ ଆଡ଼କୁ ଘାଉଁକନା ଆବାଜ ଦେଲା ଓ ରାଗରେ ଲାଙ୍ଗୁଡ଼ ବାଡ଼େଇଲା । ମୁଁ ଜାଣିଥିଲି ଯେ ଯେବେ ମୁଁ ଦଉଡ଼େ, ମୋର ନିଶ୍ଚୟ ମରଣ ହେବ । ମୁଁ ପଥରମୂର୍ତ୍ତିପରି ଛିଡ଼ା ହୋଇ ରହିଲି । କ୍ୟାମେରାଟା ମୁଁ ଫୋକସ କରିଥିଲି; ତେଣୁ ମୁହଁଟା ମୋର ଢାଙ୍କି ହୋଇ ରହିଥିଲା । ଏଇଟା ସିଂହକୁ ଅଡ଼ୁଆ ଲାଗିବାରୁ ସେ ଭଲ କରି ଦେଖିବାକୁ ଆଗେଇ ଆସିଲା । ସେ ତା ଲାଙ୍ଗୁଡ଼ଟା ପିଁ ପିଁ କରି ଘୁରାଉଥାଏ ।



ବୋଧହୁଏ ମୋର ଅଜାଣତରେ ମୁଁ ଟିକିଏ ହଲିଯାଇଥିବି । ତା ଲାଙ୍ଗୁଡ଼ଟା ସ୍ଥିର ହୋଇଗଲା । ମୋ ଉପରକୁ ସେ କୁଦିପଡ଼ିଥାନ୍ତା, କିନ୍ତୁ ମୋର ଜଣେ ସାଙ୍ଗକୁ ଜିପ୍‌ରେ ଛାଡ଼ି ଆସିଥିଲି, ସେଇ ପାଟିଟାଏ କରି କହିଲା, “ପଳା ପଳା ଜୀବନ ନେଇ, ସିଂହ ତୋତେ ଧରିବ ।”

ଜଙ୍ଗଲର ସେହି ନୀରବତା ଭିତରେ ତା କଣ୍ଠସ୍ୱରଟା ଘଡ଼ଘଡ଼ି ପରି ଶୁଣାଗଲା ।

ସିଂହ ମୋଠାରୁ ଦୂରେଇ ଯାଇ ଜିପ୍ ଆଡ଼କୁ ଢୁଙ୍କି ଗଲା । ଜିପ୍ ଭିତରର ଲୋକମାନେ ଶୂନ୍ୟକୁ ବନ୍ଧୁକ ମାରି ତାକୁ ଡରାଇ ଘଉଡ଼େଇଦେଲେ । ମୋର ତ ସେଇଠି ଚେତା ବୁଡ଼ିଗଲା ଓ ମୁଁ ବହୁତ କଷ୍ଟରେ କିଛି ସମୟ ପରେ ଜିପ୍‌କୁ ଫେରିଲି । ସେହି ମୁହୂର୍ତ୍ତ କେଇଟାର କଥା ଭାବିଲେ ମୋ ଲୋମ ଟାଙ୍କୁରି ଉଠୁଛି । ହୁଏତ ସିଂହ ମତେ ଏଇଥିପାଇଁ ଛାଡ଼ିଦେଇଗଲା ଯେ ମୁଁ ବଞ୍ଚିଥିଲେ ଦିନେ ତା କଥା କହିବି ।

ସାଧାରଣତଃ ସିଂହ ଦୁଇ ତିନିଟା ସିଂହୀଙ୍କୁ ନେଇ ଗର୍ବସହକାରେ ଘୁରିବୁଲେ । ସିଂହୀ ପେଟରେ ୯୬ ଠାରୁ ୧୧୩ ଦିନଯାକେ ଛୁଆ ରହେ । ଏକାଠି ତିନି, ଚାରି ବା ବେଳେ-ବେଳେ ଛଅଟା ଛୁଆ ଜନ୍ମ ହୁଅନ୍ତି । ସିଂହର ପରମାୟୁ ୧୫ ଠାରୁ ୩୦ ବର୍ଷ । ଲୋକେ କହନ୍ତି ଯେ ବାଘ ଓ ସିଂହ ଗୋଟିଏ ଜଙ୍ଗଲରେ ଏକାଠି ରହିପାରନ୍ତି ନାହିଁ ଓ ଯେବେ ସିଂହଟିଏ ଯାଇ ବାଘ-ବଣରେ ପଶିଯାଏ ତାହେଲେ ସେମାନେ କଳିକଜିଆ ଲଢ଼ାଲଢ଼ି କରି ପରସ୍ପରକୁ ମାରିପକାଇବେ । ଏ କଥା ସତ ନୁହେଁ । ବାଘ କାହାର ସାଙ୍ଗରେ ଝଗଡ଼ା ଆରମ୍ଭ କରେନା । ଆଲଓ୍ୱାରର ମହାରାଜା ଥରେ ବାଘ ସିଂହଙ୍କର ଦୁଇଟା ମୁକାବିଲା ବନ୍ଦୋବସ୍ତ କରିଥିଲେ । ବାଘ ଲଢ଼ିବାକୁ ଚାହିଁଲାନି । ଲଢ଼େଇ କରିବାକୁ ଯେତେବେଳେ ଉସେଇ ଦିଆହେଲା, ସେମାନେ ଲାଙ୍ଗୁଡ଼ ଯାକି ପଳେଇଲେ ।

ସିଂହର ପୁନର୍ବସତି ଲାଗି ଭାରତରେ କେତେ ଚେଷ୍ଟା ହୋଇଛି । ବାହାରୁ ସିଂହଙ୍କୁ ଆଣି ଖୋଲା ଜଙ୍ଗଲରେ ଛଡ଼ାଯାଇଛି । ଆମର ସଂରକ୍ଷିତ ଅଞ୍ଚଳଗୁଡ଼ିକ ଯଥେଷ୍ଟ ଓସାରିଆ ନୁହଁନ୍ତି କି ସିଂହର ଖାଇବାଲାଗି ତହିଁରେ ବେଶି ଜାନୁଆର ନାହାନ୍ତି । ସିଂହ ସଂରକ୍ଷିତ ଜଙ୍ଗଲରେ ବଞ୍ଚି ନପାରି ଅନେକ ସମୟରେ ବାହାରି ଆସି ଗାଈଗୋରୁ ଓ ମଣିଷଙ୍କୁ ଆକ୍ରମଣ କରେ ।

ଥରେ ଗୋଆଲିଅର୍‌ର ମହାରାଜା ସିଧା ଆବିସିନିଆରୁ ସିଂହଛୁଆ ଆଣି କିଛିଦିନ ପାଳିବାପରେ ଗୋଆଲିଅର ଓ ଶିବପୁରୀ ମଝିରେ ଥିବା ମୋହନା ଜଙ୍ଗଲରେ ଛାଡ଼ି ଦେଇଥିଲେ । କିଛିଦିନ ସିଂହମାନେ ଜଙ୍ଗଲର ଜାନୁଆର ଖାଇ ବଞ୍ଚିଲେ; କିନ୍ତୁ ଶୀଘ୍ର ଗାଈଗୋରୁଙ୍କୁ ଉଠେଇବା ଆରମ୍ଭ କଲେ ଓ ପରେ ପରେ ମଣିଷ ଖାଇଲେ । ତାଙ୍କୁ ଫାଶ ଦେଇ ଧରିନେଇ ଶିଓପୁରର କଣିକିଆ ବିଭିନ୍ନ ଜଙ୍ଗଲରେ ଛାଡ଼ିଦିଆଗଲା । ସେମାନେ କିଛିକାଳ ବଞ୍ଚିଲେ ସତ; କିନ୍ତୁ ପୁଣି କେଇଟା ମଣିଷଖିଆ ହୋଇଗଲେ ଓ ତାଙ୍କୁ ବାଧ୍ୟହୋଇ ମାରିଦିଆଗଲା । ସିଂହ ସହଜରେ ନୂଆ ପରିସ୍ଥିତିରେ ଖାପ ଖୁଆଇ ଚଳିପାରେନା ।



ଏବେ ଜୁନାଗଡ଼ରୁ ଦୁଇଟି ସିଂହୀ ଓ ଗୋଟିଏ ସିଂହ ନେଇଯାଇ ଉତ୍ତର ପ୍ରଦେଶର ଚନ୍ଦ୍ରପ୍ରଭାକୂଳରେ ସ୍ଥିତ ଜଙ୍ଗଲରେ ଛାଡ଼ିଦିଆଯାଇଛି ।

ଅନେକ ସମୟରେ ଭୟ ହୁଏ, ଏମାନେ ବି ଦିନେ ଜଙ୍ଗଲ ଛାଡ଼ିଦେଇ ମଣିଷ ଶିକାର ଆରମ୍ଭ କରିଦେବେ ଓ ତାଙ୍କୁ ବି ଗୁଳିକରି ମାରି ଦେବାକୁ ପଡ଼ିବ ।

# କେନ୍ଦୁଆ

ବିଲେଇ ବଂଶରେ ବାଘଠୁଁ ସାନ ଚତୁର ଓ ଚିତାକଟା ହେଉଛି କେନ୍ଦୁଆ (Leopard) ବା କଲରାପତରିଆ । ବୁନ୍ଦେଲଖଣ୍ଡରେ ଏହା ନାଁ 'ତେନ୍ଦୁଆ' । ତା ଦେହର ଚିତାଗୁଡ଼ାକ ଫୁଲ- ଫୁଲିଆ ହୋଇଥିବାରୁ ତା ନାଁ 'ଗୁଲଦାର୍' ( ଫୁଲବାଲା ) ବି ହୋଇଥାଏ, ବା 'ଗୁଲବଘା' ଫୁଲପକା ସିଂହ ।

କେନ୍ଦୁଆ ସବୁ ଦେଶରେ ମିଳିବେ । ଆଫ୍ରିକାରେ ବାଘ ନାହାନ୍ତି; କିନ୍ତୁ ଚିତାବାଘ ପ୍ରଚୁର । କେନ୍ଦୁଆର ସମ୍ପର୍କୀୟ ଜାଗୁଆର୍ ଆମେରିକାର ସବୁଠି ଦେଖିବାକୁ ମିଳେ । ଏସିଆର ସବୁ ଜାଗାରେ, କେବଳ ସାଇବେରିଆର ଉତ୍ତର ଅଞ୍ଚଳକୁ ଛାଡ଼ିଦେଲେ କେନ୍ଦୁଆ ଦେଖିବାକୁ ମିଳେ । ଅଣ୍ଡାମାନ, ଜାପାନ, ଅଷ୍ଟ୍ରେଲିଆ, ନ୍ୟୁଜିଲାଣ୍ଡ, ମାଡ଼ାଗାସ୍କାର ଓ ସାହାରା ହେଉଛି କେନ୍ଦୁଆ ହୀନ ଅନ୍ୟ ଅଞ୍ଚଳମାନ । ଭାରତରେ ସବୁ ଅଞ୍ଚଳରେ କେନ୍ଦୁଆ ଦେଖିବାକୁ ମିଳନ୍ତି । ହିମାଳୟର ୨୦୦୦ ରୁ ୨୮୦୦ ମିଟର ଉଚ୍ଚତା ପର୍ଯ୍ୟନ୍ତ ସେ ମିଳିବ । ଯୋଉଠି ଥାଉ, କେନ୍ଦୁଆ ହେଠାର ବଟୁଠାରୁ ଉଚ୍ଚା ଜାଗାରେ ନିଜର ସ୍ଥାନ ବାଛିନେବ ।

କେନ୍ଦୁଆର ଦେହଟା ସୁନେଲିମିଶା ମାଟିଆ । ତାର ପେଟତଳଟା ଧଳା; କିନ୍ତୁ ଦେହଟା ସାରା ଫୁଲପରି ଚିତା । ଟେଙ୍ଗା, ବେକ, ମୁଣ୍ଡ, ଲାଙ୍ଗୁଡ଼ ଓ ପେଟର ଚିତାଗୁଡ଼ାକ ଗାଢ଼



କଳା । ଆସାମ ଓ କେରଳ, ଯୋଉଠିକି ହାରାହାରି ବର୍ଷା ୨୮୦ ସେଣ୍ଟିମିଟରରୁ ବେଶୀ, ସେଠି ଚିତାବାଘ ବହୁତ୍ କଳା ରଙ୍ଗର । ତଥାପି ଯେବେ ତାକୁ ନଠେଇ ଚାହିଁବ, ତାର ସେଇ କଳା ଚମଡ଼ା ଭିତରେ ବି ଫୁଲପକା ଚିତାଯାକ ଦେଖିପାରିବ । ତାର ରଙ୍ଗ ଓ ଚିତା ଦାଗ ତାକୁ ବାହାର ଦୃଷ୍ଟିରୁ ରକ୍ଷାକରେ । ସୁନେଲିମିଶା ମାଟିଆ ରଙ୍ଗ ଓ କଳା ଦାଗ ମିଶି ଜଙ୍ଗଲର ସୂର୍ଯ୍ୟକିରଣ ଓ ଛାଇ ସାଙ୍ଗରେ ଏପରି ମିଶିଯାଏ ଯେ, କେନ୍ଦୁଆ ବସିଥିଲେ ତାକୁ ବାରିବା ଦୁଷ୍କର ହୋଇପଡ଼େ ।

ଦେଖିବାକୁ ସେ ଏତେ ସୁନ୍ଦର ଯେ ତାର ଚମଡ଼ାକୁ ଆଉଁସିବାକୁ ମନହୁଏ ।

କେନ୍ଦୁଆ ବିଲେଇ ପରି ସେଇମିତି ଡଉଲ ଗଢ଼ଣ, ଚୁପି ଚୁପି ଚାଲି, ତୀକ୍ଷ୍ଣ କାନ ଓ ଖଦଖଦଡ଼ିଆ ଜିଭ । ବେଗରେ କେନ୍ଦୁଆ ବିଲେଇ-ପରିବାରର ସମସ୍ତଙ୍କଠାରୁ ସରସ । ସେ ୮୦ ସେ:ମି: ଯାକେ ଉଚ୍ଚ ହୁଏ ଓ ନାକଠୁ ଲାଙ୍ଗୁଡ଼ର ଅଗଯାକେ ଅଢ଼େଇ ମିଟର ଲମ୍ବ ହୁଏ । ଲାଙ୍ଗୁଡ଼ର

କଳା କେନ୍ଦୁଆ




## କେନ୍ଦୁଆ ଦେହର ଚିହ୍ନସବୁ

୧ ଓ ୨. ପେଟର ଇନଭଗରେ, ୩. ପିଠିରେ, ୪. ବେକର ଓସାରିଆ ତଁଗରେ, ୫. ମୁଣ୍ଡ ଉପରେ, ୬. ବେକର ଉପର ଅଂଶରେ, ୭. ପିଠିର ମେରୁଦଣ୍ଡ ପାଖରେ, ୮. ଲଙ୍ଗୁଡ଼ର ଆରମ୍ଭରେ, ୯ ଓ ୧୦. କାନ୍ଧପାଖ ମେରୁଦଣ୍ଡର ଠିକ୍ ତଳକୁ, ୧୧. ପଞ୍ଜରହାଡ଼ ପାଖରେ, ୧୨. ପେଟର ତଳ ଆଡ଼କୁ , ୧୩. କାନ୍ଧରେ ।

ବି· ଦ·—ଛାବଟ ଆକାରର ସେଲ ୦·୪ ସେ: ମି:



ଲମ୍ବ ପ୍ରାୟ ୭୫ ସେଣ୍ଟିମିଟର ହୁଏ । ଓଜନ ୯୧ କିଲୋଗ୍ରାମ୍ ଯାକେ ହୋଇପାରେ । ଅବଶ୍ୟ ମାଈଟା ଛୋଟ ଓ ହାଲୁକା ହୁଏ ଅଣ୍ଡିରା ତୁଳନାରେ ।

ମାଈ କେନ୍ଦୁଅର ଥରକେ ତିନି ଚାରିଟା ଛୁଆ ହୁଅନ୍ତି । ଚିଡ଼ିଆଖାନାମାନଙ୍କରେ ଦେଖାଯାଇଛି, ତିନିଚାରି ମାସକାଳ ସେ ଛୁଆ ଗର୍ଭରେ ରହୁଥାନ୍ତି । ଜନ୍ମହେବା ବେଳକୁ ତାଙ୍କ ଆଖିମାନ ବୁଜା ହୋଇ ରହୁଥାଏ ଏବଂ କୋଡ଼ିଏ ଦିନଯାକେ ଆଖି ଫିଟେନା । ବେଳେ ବେଳେ ଛୁଆଙ୍କୁ ପାଳିବାରେ ଅଣ୍ଡିରା କେନ୍ଦୁଆ ସାହାଯ୍ୟ କରେ । ମା' ଛୁଆଙ୍କୁ ଏକୁଟିଆ

ଝାଡ଼ ଜାଗାରେ ରଖେ ଏବଂ କାହାରିକି ତାଙ୍କ ପାଖକୁ ଆସିବାକୁ ଦିଏନା । ଛୁଆଙ୍କ ମା' ବେକପାଖରୁ କାମୁଡ଼ି ଏଠୁ ସେଠିକି ନେଇଯାଏ ।

କେନ୍ଦୁଆର ପଞ୍ଝା ମାଉଁସିଆ । ଆଗ ପଞ୍ଝାରେ ପାଞ୍ଚଟି ଓ ପଛ ପଞ୍ଝାରେ ଚାରିଟିକରି ନଖ । କେନ୍ଦୁଆ ଚାଲୁଥିଲାବେଳେ ନଖଯାକ ମାଉଁସ ପଛରେ ଲୁଚିରହିଥାଏ । ଏଇ ଅଠରଟି ନଖ ଜାଣି ଅଠରଟି ଦାଢ଼ୁଆ ଛୁରୀ । ଥରେ କୋଉ ଜନ୍ତୁ ସେ ଜାବୁଡ଼ାରେ ପଡ଼ିଲେ ଆଉ ସେଥିରୁ ପଳାଇବାର ଉପାୟ ରହେନା । କେନ୍ଦୁଆ ତା ନଖକୁ ଗଛ ଗଣ୍ଡିରେ ଘଷି ଧାରୁଆ କରେ । ତାର ସାଗୁଆ ଆଇଁଷିଆ ହଳଦିଆ ଆଖିଡ଼ୋଳା ଦୁଇଟି ଗୋଲ ଗୋଲ ବରାଡ଼ିପରି । ତହିଁରେ ସଳଖ ଦାଗ ନାହିଁ । ଆଲୁଅ ପଡ଼ିଲେ ସେ ଦୁ'ଟା ରଡ଼ ନିଆଁ ଭଳି ଝଟକନ୍ତି । କେନ୍ଦୁଆ ଆଲୁଅକୁ ଡରେ । କେବଳ ଅନ୍ଧାର ହେବାପରେ, ବାଘ ଶିକାରକୁ ବାହାରିବାର ଘଣ୍ଟାଏ ଖଣ୍ଡେ ପୂର୍ବରୁ, ଶିକାରକୁ ବାହାରେ । ସିଂହ ବା ବାଘଭଳି କେନ୍ଦୁଆ ଗର୍ଜନ କରେନା । ସେ କେବଳ ଖଙ୍କାରେ । ଏହି ଖଙ୍କାରିବାଟା କାଠରେ କରତ ଚାଲୁଥିବାପରି ଶୁଭେ । ଏହି ଶବ୍ଦ କରି ମାଈ ଅଣ୍ଡିରାକୁ ଡାକଥାଏ । ସେ ହୁଙ୍କି କରି ତାର ରାଗ ପ୍ରକଟ କରେ । ଛୁଆଙ୍କ ଆକଟ କଲାବେଳେ ମାଈ କେନ୍ଦୁଆ ସାପ ଭଳିଆ ସିଁ ସିଁ ହୁଏ ।

କେନ୍ଦୁଆ ଅକ୍ଳେଶରେ ବଲେଇପରି ଗଛ ଓ ଘରର ଛାତ ଉପରେ ଚଢ଼ିଯାଇପାରେ । ସାଧାରଣତଃ ସେ ତାର ଶିକାର ମାଉଁସକୁ ଗଛଡ଼ାଳରେ ଲୁଚାଇ ରଖେ । ସେ ପାଣିକୁ ଡରେ ଏବଂ ଟୋପେ ପାଣି ଦେଖିଲେ ପଳାଇଯାଏ । ବାଘପରି ତାର ଶୁଣିବା ଶକ୍ତି ପ୍ରବଳ, ତା ତଳକୁ ଦେଖିବା ଶକ୍ତି ଓ ସବୁଠୁଁ କମ୍ ଶୁଙ୍ଘିବା ଶକ୍ତି । ଦରକାରବେଳେ କେନ୍ଦୁଆ ନିଜ ଦେହକୁ ଏତେ ଛୋଟ କରିଦେଇପାରେ ଯେ ଖୁବ୍ ଅଳ୍ପ ଜାଗାରେ ସେ ଲୁଚିରହି-ପାରେ । ଦିଲ୍ଲୀ ଚିଡ଼ିଆଖାନାର ଗୋଟିଏ କଳା କେନ୍ଦୁଆ 'ଭୋଲା' ତା ପିଞ୍ଜରାରୁ ପଳାଇଥିଲା । ସେହି ପିଞ୍ଜରାର ମଝିରେ ମଝିରେ ବଡ଼ ଜୋର ୧୫ ସେ:ମି: ଫାଙ୍କ ହେବ ।

କେନ୍ଦୁଆ ସବୁ ଜନ୍ତୁଙ୍କୁ ଖାଏ; କିନ୍ତୁ କୁକୁର ମାଉଁସକୁ ତାର ସବୁଠୁଁ ବେଶି ଲୋଭ । ବେଳେ ବେଳେ ସେ ଏପରିକି ଶୋଇବା ଲୋକର ଖଟିଆତଳୁ କୁକୁର ଚୋରାଇ



କଳା କେନ୍ଦୁଆ—'କେଳା'



ମାତ୍ର ୧୫ ସେଣ୍ଟିମିଟର ଫାଙ୍କଥିବା ଲୁହାଛଡ଼ ଭିତରେ ଗଳି
ଗଲା ପିଣ୍ଡଗରୁ ଖସିପଳାଇଛ ।

ନେଇଆସେ । ଅନେକ ସମୟରେ ସେ ବାଘର ଲୁଚାଇଥିବା ଶିକାର ଖାଇଦିଏ । କିନ୍ତୁ ସେ ବାଘ ପରି ଏତେ ସଫାସୁତୁରା କରି ଖାଇପାରେ ନାହିଁ । ଶିକାରକୁ ଦେଖି ସେଇଟାକୁ ବାଘ ଖାଇଛି ନା ଚିତାବାଘ ଖାଇଛି ଜାଣିହେବ । ବାଘ ଭଳି ଚିତାବାଘର ବି ଜିଭଟା ଉପର ରେଗ୍‌ମାର (କାଚଗୁଣ୍ଡଦିଆ ଘଷିବା କାଗଜ ଭଳିଆ ଖଦଡ଼ଖଦଡ଼ିଆ ଓ ତଳପଟ ଲହୁଣି ଭଳିଆ ନରମ ।

କେନ୍ଦୁଆ ଶିକାର ଉପରକୁ ଡେଇଁପଡ଼ିବନି; କିନ୍ତୁ ବିଜୁଳିବେଗରେ ତା ଉପରେ ପଡ଼ିଯିବ । ତାର ଚଞ୍ଚଳତାର ସୀମା ନାହିଁ । ସେଇଥିପାଇଁ ମଣିଷଖିଆ କେନ୍ଦୁଆକୁ ଧରିବା ଦୁଷ୍କର । ଗଡ଼ୱାଲ୍‌ ରୁଦ୍ରପ୍ରୟାଗଠାରେ ଗୋଟିଏ ମଣିଷଖିଆ କେନ୍ଦୁଆ ୧୨୫ ଜଣଙ୍କୁ ମାରିସାରିଥିଲା । ସେ ଆଠବର୍ଷ କାଳ ଶିକାରୀଙ୍କଠୁଁ ବଞ୍ଚିକରି ରହିପାରିଥିଲା । ମାସ ମାସ ଧରି ତା ପିଛାକରି ବିଖ୍ୟାତ ଶିକାରୀ ଜିମ୍ କର୍‌ବେଟ୍ ଶେଷକୁ ତାକୁ ମାରିପାରିଥିଲେ ।

ମଞ୍ଚାଉପରେ ବସିଲେ ମଣିଷ ବାଘ ହାବୁଡ଼ରୁ ରକ୍ଷା ପାଇବ; କିନ୍ତୁ କେନ୍ଦୁଆଠାରୁ ରକ୍ଷା ପାଇପାରିବନି । କେନ୍ଦୁଆର ହାତକୁ ବି ଡର ନାହିଁ । ସେ ଲମ୍ବ ଘାସରେ ଲୁଚିରହି ସୁବିଧା ଦେଖି ତାକୁ ବରଂ ଆକ୍ରମଣ କରେ । ଘାଇଲା କେନ୍ଦୁଆ ଯେପରି ଯମର ଚଳନ୍ତ ପ୍ରତିମା । ଘାଇଲା କେନ୍ଦୁଆକୁ ଖୋଜିବାକୁ ଯାଇ ଅଗଣିତ ଶିକାରୀ ପ୍ରାଣ ହରାଇଛନ୍ତି । ଘାଇଲା ବାଘକୁ ବରଂ ଖୋଜି ପାଇବା ସହଜ; କେନ୍ଦୁଆକୁ ନୁହେଁ । ଘାଇଲା କେନ୍ଦୁଆର ଆଘାତ ବାଘର ଆଘାତଠାରୁ କମ୍ ବିପଜ୍ଜନକ । କେନ୍ଦୁଆ କାମୁଡ଼ିଲେ ମଣିଷ ବଞ୍ଚିବାର ଦେଖାଯାଏ; କିନ୍ତୁ ବାଘ କାମୁଡ଼ା ଖାଇଲେ କେହି ବଞ୍ଚିବା ଦୁଷ୍କର ।

ଗଡ଼ୱାଲର ଜଣେ ବିଖ୍ୟାତ ଶିକାରୀ ମୁକୁନ୍ଦଲାଲ ତାର ବାର ନମ୍ବର କେନ୍ଦୁଆକୁ ଖୋଜୁଥିଲାବେଳେ ଟିକକେ ବଞ୍ଚିଯାଇଥିଲା । ତେହରୀର ଗୋଟିଏ ରାସ୍ତାକୁ କେନ୍ଦୁଆଟା ପଶିଆସି ଗଧଟାଏ ମାରିଦେଲା । ମୁକୁନ୍ଦଲାଲ ତା ବନ୍ଧୁକଟି ଧରି କେନ୍ଦୁଆ ଲାଗି ଟାକି-ବସିଲା । ସନ୍ଧ୍ୟାବେଳକୁ ଯେତେବେଳେ କେନ୍ଦୁଆ ଶିକାର ଖାଇବାକୁ ଆସିଲା, ମୁକୁନ୍ଦଲାଲ ଗୁଳି ଚଳାଇଲା; କିନ୍ତୁ ତାକୁ ମାରିପାରିଲାନି । ଘାଇଲା ଜନ୍ତୁଟା ପଳାଇଗଲା । ପରଦିନ ମୁକୁନ୍ଦଲାଲ ତା ଚିହ୍ନ ଦେଖି ଦେଖି ତାକୁ ପୁରୁଣା ନଅରର ବଗିଚାପାଖେ ଯାଇ ଠଉରେଇଲା ।



କେନ୍ଦୁଆଟା ବୁଦା ଆଢ଼ୁଆଳରେ ଲୁଚିଥିଲା । ମୁକୁନ୍ଦଲାଲ ତା ଉପରେ ପଥର ଢେଲା ବର୍ଷା-କରି ତାକୁ ବାହାରକୁ ଘଉଡ଼େଇ ଆଣିଲା । ଜନ୍ତୁଟା ଯେମିତ ବାହାରିଛି, ମୁକୁନ୍ଦଲାଲ ଗୁଳି କଲା; କିନ୍ତୁ ପୁଣି ଥରେ ତା ଲକ୍ଷ୍ୟ ଭୁଲ ହୋଇଗଲା । କେନ୍ଦୁଆ ପଳାଇ ଯାଇ ପୁଣି ବୁଦା

ଆଢ଼ୁଆଳରେ ଲୁଚିଗଲା । ଲୋକମାନେ ସେଠି ଜମିଥିଲେ । ସେମାନେ ବୁଢ଼ାକୁ ଢେଲା ପଥର ଫିଙ୍ଗିଲେ । କେନ୍ଦୁଆ ଯେତେବେଳେ ବାହାରିଲା, ମୁକୁନ୍ଦଲାଲ ପୁଣି ଥରେ ଗୁଳି କଲା ଓ ଉତ୍ତାପ ଥିବା ଲାଗି ପୁଣି ତା ନିଶାଣ ଭୁଲ ହେଲା । ଏଥର କେନ୍ଦୁଆ ମୁକୁନ୍ଦଲାଲ ଉପରକୁ କୁଦିପଡ଼ିଲା । ତା ବାଁ କାନ୍ଧଟାକୁ ଝିଙ୍କିପକାଇଲା ଓ ତାପରେ ତା ଗୋଡ଼କୁ ଖାଇବାକୁ ଯାଉଥିଲା । ମୁକୁନ୍ଦଲାଲ ହାତରେ ଖାଲି ଗୁଳିହୀନ ବନ୍ଧୁକଟିଏ । ସେ ଯଥାଶକ୍ତି ଲଢ଼ିଲା । ଶେଷରୁ ସେ କେନ୍ଦୁଆର ମୁଣ୍ଡକୁ ତା ବନ୍ଧୁକମୁଠାରେ ପାହାରେ ଦେଲା । ନଳୀ ଓ କେନ୍ଦୁଆର ଖପୁରି ଏକାବେଳେ ଫାଟିଲେ । ସେଇକ୍ଷଣି କେନ୍ଦୁଆଟି ମରିଗଲା । ମଣିଷ ଓ କେନ୍ଦୁଆର ଏ ଲଢ଼େଇ କେତେ ଲୋକ ନିଜର ଛାତ ଉପରୁ ଦେଖିଛନ୍ତି । ମୁକୁନ୍ଦଲାଲ ଅନେକ ଦିନ ଡାକ୍ତରଖାନାରେ ରହିଲା ।

ଚତୁର ବୁଦ୍ଧିରେ କେନ୍ଦୁଆକୁ ବଳିକରି କୋଉ ଜନ୍ତୁ ନାହିଁ । ଶିକାରୀ ଆସୁଥିବାର ଟିକିଏ ସୁରାକ୍ ପାଇଲେ ସେ ଇନ୍ଦ୍ରଜାଲ ଭଳିଆ ଉଭେଇଯିବ । ଆମ ଜଙ୍ଗଲମାନଙ୍କରେ ବାଘ ତୁଳନାରେ ଅନେକ ବେଶି କେନ୍ଦୁଆ ରହିଛନ୍ତି । ବାଘଠାରୁ ଅନେକ ସହଜରେ କେନ୍ଦୁଆ ଶିକାରୀର ହାତମୁଠାରୁ ଖସି ପଳାଇଯାଏ । ପ୍ରତି ଦୁଇ ଶହ ବାଘରେ କେବଳ ଗୋଟିଏ କେନ୍ଦୁଆ ମରାହୁଏ । କେନ୍ଦୁଆର କୌଶଳ ବିଷୟରେ କେତେ ଗପ ଶୁଣାଯାଏ । ଅନେକ ସମୟରେ ଶିକାରୀ ପାଖରୁ ତାର ଅଜାଣତରେ ଟୋପ ଚୋରିକରି ନେଇଯାଏ; ଆଉ ଶିକାରୀ ଧୈର୍ଯ୍ୟ ଧରି ତା'ଲାଗି ଟାକି ବସିଥାଏ ।

ସାଧାରଣତଃ କେନ୍ଦୁଆ ମଣିଷ ଆଗକୁ ବାହାରେ ନାହିଁ; କିନ୍ତୁ ବେଳେ ବେଳେ ତାକୁ ବଣୁଆ ରାସ୍ତାର ଛକ ଉପରେ ବସିଥିବାର ଦେଖାଯାଏ । ୧୯୬୭ର ସାଧାରଣ ନିର୍ବାଚନ ବେଳେ କେରଳରେ ଗୋଟିଏ କେନ୍ଦୁଆ ଭୋଟ ଦେବାକୁ ଆସିଲା ପରି ଅନାୟାସରେ ଗୋଟିଏ ବୁଥ୍ ଆଡ଼କୁ ଟହଲି ଟହଲି ଯାଇଥିଲା । ଏହିଭଳି ଗୋଟିଏ ଘଟଣା ମଧ୍ୟ ବହରାଇଚ୍ ଜଙ୍ଗଲରେ ହୋଇଥିଲା ଗୋଟିଏ ବିଶ୍ରାମ-ଗୃହରେ । ଗୋଟିଏ ଘାଉଳା କେନ୍ଦୁଆ ପୂରା ବର୍ଷାଋତୁଟା ସାରା ଗୋଟିଏ ବଖରା ଦଖଲ କରି ରହିଥିଲା । କେବଳ ଜଣେ ଅତିଥି ଆସି ରହିବା ପରେ ଯାଇ

ତହିଁ ଆରଦିନ ସକାଳୁ ତାକୁ ଘଉଡ଼ାଯାଇଥିଲା । କେନ୍ଦୁଆ ଛୁଆକୁ ପୋଷା ମନାଇବା ସହଜ; କିନ୍ତୁ ତାକୁ ପାଳିବା ମାନେ ପ୍ରକୃତରେ ଗୋଟାଏ ବେକାର ଝମେଲା । କାହିଁକିନା ମଣିଷ ସାଙ୍ଗରେ ବର୍ଷକରୁ ବେଶି କେନ୍ଦୁଆ ରହିପାରେନା ।

ଦୁଇ ପ୍ରକାରର କେନ୍ଦୁଆ ଆମ ଦେଶରେ ମିଳନ୍ତି । ପ୍ରଥମଟି ହେଲା ବରଫର କେନ୍ଦୁଆ, ଯାହାକ କାଶ୍ମୀର ଓ ପଶ୍ଚିମ ହିମାଳୟର ୩୬୦୦ ମିଟର ଉଚ୍ଚତାରେ ମିଳେ । ସମତଳର କେନ୍ଦୁଆଠାରୁ ବରଫ କେନ୍ଦୁଆ ଆକାରରେ ଶ୍ରେଷ୍ଠ । ଏହାର ଲମ୍ବ ଦୁଇ ମିଟର ଓ ଚଉଡ଼ା ଏକ ମିଟରରୁ ଦୁଇ ଓ ନଢପା ମିଟରଯାକେ ହୁଏ; ଆଉ ଓଜନ ୨୭ ଠାରୁ ୪୧ କିଲୋଗ୍ରାମ ଯାକେ ହୁଏ । ରଙ୍ଗଟା କାଦୁଆ ଓ ଦାଗଯାକ ଫିକା କଳା । ତାର ଏହି ରଙ୍ଗଟା ବରଫାବୃତ ପାହାଡ଼ ପଟ୍ଟତରେ ଯେତକ ଛପିବାରେ କାମକୁ ଆସେ, ମୁଣ୍ଡିଆ ପାହାଡ଼ରେ ବି ସେତକ କାମକୁ ଆସେ । ତାକୁ ଧରିବାକୁ ହେଲେ ଲୁହାର ସ୍ପ୍ରିଂ-ଲଗା ଜନ୍ତା ଭଲ । ବରଫ କେନ୍ଦୁଆର ଚମଡ଼ା ଖୁବ୍ ମୂଲ୍ୟବାନ୍; କାରଣ ତାର ଲୋମଗୁଡ଼ିକ ଲମ୍ବା, ନରମ ଓ ଚକ୍‌ଚକ ।

ଆଉ ପ୍ରକାରର କେନ୍ଦୁଆଟି ହେଲା ବଉଦିଆ କେନ୍ଦୁଆ । ଏ ଜାତର କେନ୍ଦୁଆ ପୂର୍ବ-


ବରଫ କେନ୍ଦୁଆର ପାର୍ବତ୍ୟ ବାସସ୍ଥାନ



ବରଫ କେନ୍ଦୁଆ

ହିମାଳୟର ଜଙ୍ଗଲ, ଆସାମ, ସିକମ ଓ ନେପାଳରେ ଦେଖାଯାନ୍ତି । ଇଏ ପ୍ରାୟ ଗଛରେ ବସନ୍ତି । ସ୍ୱାର ରଙ୍ଗ କାଦୁଆ ଖାକି ବର୍ଣ୍ଣର ଅଟେ । ତାର ମୁଣ୍ଡ, ଗୋଡ଼ ଓ ଲଙ୍ଗୁଡ଼ରେ ବଡ଼ କଳା ଦାଗମାନ୍ ଥାଏ । ଦେହରେ କଲୁ ଭାର

ଦାଗଯାକ ଷଟ୍‌କୋଣିଆ ଓ ଲମ୍ବ ଲମ୍ବ; ଅନେକ ସମୟରେ ପଟାଣିଆ ଦାଗ ବୋଲି ଭ୍ରମ ହୋଇଥାଏ ।

ବଢ଼ଦଆ କେନ୍ଦୁଆର ଉଚ୍ଚତା ୮୦ ସେ.ମି. ଯାକେ ହେବ । ଲଙ୍ଗୁଡ଼ର ଲମ୍ବ ସହିତ ଦେହର ଲମ୍ବ ଦେଢ଼ରୁ ପଉଣେ ଦୁଇ ମିଟର । ଲଙ୍ଗୁଡ଼ିର ଲମ୍ବ ୭୯-୯୦ ସେଣ୍ଟି ମିଟର



ଯାଏ ହୁଏ । ଓଜନ ଭାର ୧୬ ଠାରୁ ୨୩ କିଲୋଗ୍ରାମ ପର୍ଯ୍ୟନ୍ତ ଅଟେ । ଏହାର ଗୋଡ଼ର ଓଜନ ଅନ୍ୟ ଜାତିର କେନ୍ଦୁଆଙ୍କଠାରୁ ବେଶି ଏବଂ ଏହାର ପଞ୍ଝା ଚଉଡ଼ା ଓ ମୋଟା । ତାର କଲଦାନ୍ତଗୁଡ଼ିକ ଲମ୍ବା ଓ ମଜବୁତ୍ ଏବଂ ବୋର୍ଣ୍ଣିଓର ଲୋକେ ତାକୁ କାନଫୁଲ କରି ପିନ୍ଧିବାକୁ ପସନ୍ଦ କରନ୍ତି । ଏହି ପ୍ରକାର କେନ୍ଦୁଆ ସହଜରେ ପୋଷା ମାନନ୍ତି । କେବଳ ଖାଇଲାବେଳେ ଗଣ୍ଡଗୋଳ ହେଲେ ସେ ଆକ୍ରମଣ କରେ; ନଚେତ୍



ବଉଦିଆ କେନ୍ଦୁଆ



ଜାଗୁଆର

ନାହିଁ । ନିକଟରେ ଦିଲ୍ଲୀର ଚିଡ଼ିଆଖାନାରେ ଗୋଟିଏ କଳାଦିଆ କେନ୍ଦୁଆ ରଖାହୋଇଛି ।

କେନ୍ଦୁଆର ଏକ ନିକଟ-କୁଟୁମ୍ବ ହୋଇଛି ଜାଗୁଆର୍; କିନ୍ତୁ ଜାଗୁଆର୍ ଭାରତରେ ନାହିଁ; କେବଳ ଆମେରିକାରେ ଦେଖାଯାଏ । ସେ ତାର ଭାରତୀୟ ଭାଇଠାରୁ ବଡ଼ ଓ ଭାରି । ତାର ରଙ୍ଗ ଉଜ୍ଜ୍ୱଳ ଓ ଦେହଟି ଦାଗ ଦାଗ । କାନ ଦୁ'ଟା ଠିଆଠିଆ ଓ ପଛପଟ କଳା । ତାର ତଳ ଓଠରେ ଗୋଟାଏ ଗାଢ଼ କଳା ଦାଗ ଥାଏ । କେନ୍ଦୁଆ ପରି ଜାଗୁଆର ପାଣିକି ଡରେନା । ସେ ଖୁବ୍ ଭଲ ପହଁରିପାରେ । ଜାଗୁଆର୍ ଧରାହେଲେ ବି ଆନନ୍ଦରେ ରହିପାରେ; କିନ୍ତୁ ଚିତାବାଘଠାରୁ ବି ଭୟାନକ ହୋଇଥିବାରୁ ତାକୁ ପୋଷା ମନାଇବା କଠିନ କାମ ।

# ଚିତା

ଯଦିଓ ଚିତାକୁ ବିଲେଇ-ପରିବାର ଭିତରେ ଗଣାଯାଏ, କୁକୁର ସଙ୍ଗରେ ତାର ଅଧିକ ମେଳ ଅଛି । କୁକୁର ପରି ଲମ୍ବ ଲମ୍ବ ଗୋଡ଼ । କେବଳ ଚେହେରାକୁ ଛାଡ଼ିଦେଲେ, ତାର ସବୁ ଚାଲିଚଳଣ ବିଲେଇ-ପରିବାରର ଅନ୍ୟ ସଭ୍ୟମାନଙ୍କଠାରୁ ଅଲଗା । ଚିତା ଦୁଇ ପ୍ରକାର । ଭାରତୀୟ ଚିତା ଓ ଆଫ୍ରିକାର ଜଙ୍ଗଲ ଓ ବିଲରେ ଦେଖାଯାଉଥିବା ଚିତା ଏକାପରି ।

କେନ୍ଦୁଆଠାରୁ ଚିତା ଡେଙ୍ଗା । ସେ ଦୁଇଠାରୁ ଅଢ଼େଇ ମିଟର ଲମ୍ବ ତାର ୬୦-୭୦ ସେ:ମି: ଲମ୍ବର ଲାଙ୍ଗୁଡ଼କୁ ମିଶେଇ । ଉଚ୍ଚତାରେ ସେ ମିଟରେ ଓ ଓଜନ ୪୦ରୁ ୬୫ କିଲୋଗ୍ରାମ । ଛୁଆ ମାଆ ପେଟରେ ୯୦ ଦିନଯାକେ ରହନ୍ତି । ଏକାଥରେ ଦୁଇଠାରୁ ଚାରିଟା ଛୁଆ ଚିତା ଜନ୍ମ ଦେଇପାରେ ।

ଚିତାର ଚମଡ଼ାର ରଙ୍ଗ ଓ ଦାଗ କେନ୍ଦୁଆ ଭଳି । ଖାଲି ଏତିକି ଯେ ଚିତାର ଦାଗଯାକ ଘନ ଓ ଗାଢ଼ କଳା । ଛୁଆଙ୍କ ଦେହର ରଙ୍ଗ ହାଲୁକା, ନୀଳ ଓ ମାଟିଆ; ଲୋମ



ଝୁଡ଼୍ କରନ୍ତି । ସେମାନେ ବଡ଼ ହେବା ପରେ ପରେ ଆଗରେ ବେଶି ସୁସ୍ଥ ଓ ସଜା ହୋଇଯାଏ । ତାର ମୁଣ୍ଡଟା ଦେହ ତୁଳନାରେ ଛୋଟ ଏବଂ ମୁହଁଟା କେନ୍ଦ୍ର ଅଠାରୁ ଅଧିକ ଚେପ୍‌ଟା । ତାର ଆଖିକୋଣରୁ ଲୁହଧାର ପରି ଦୁଇପଟେ ଯୋଡ଼ିଏ କଳାଦାଗ ତା'ଦାନ୍ତରେ ଓ ଓଠ ପାଖିଯାଏ ଲମ୍ବିଥାଏ । ତାର ଗ୍ଲେଟ ଛୋଟ କାନ ଓ ଆଖିତୋଳା



ଦ'ଟି ଗୋଲ ଗୋଲ । ତା ଲୁମ ଝାଁପା ଓ ଦେହଟା ଫମ୍ପଳ ଫମ୍ପଳ । ଚିତରା ନଖତକ ଚମଡ଼ାରେ ଲୁଚି ନଥାଏ ଓ ବିଲେଇ ପରି ସେ ପୁରାପୁରିଭାବେ ସେଗୁଡ଼ିକୁ ଭିତରକୁ ଟାଣି ନେଇପାରେ ନାହିଁ । ତେଣୁ ତାର ନଖକୁ ଗଛ ଗଣ୍ଡିରେ ଘଷି ଧାରୁଆ କରେ । ଏଥିପାଇଁ ସେ ଗୋଟିଏ ନିର୍ଦ୍ଦିଷ୍ଟ ଗଛକୁ ବାରମ୍ବାର ବ୍ୟବହାର କରେ । ତେଣୁ ଲୋକମାନେ ସେଇଠି

ଫନ୍ଦା ବସାଇ ତାକୁ ସେଇ ଗଛ ପାଖରେ ଧରନ୍ତି । ଚିତାର ଦାନ୍ତ କେନ୍ଦୁଆର ଦାନ୍ତଠାରୁ ଶ୍ରେଷ୍ଠ ।

ଚିତାର ଦୃଷ୍ଟିଶକ୍ତି ତାର ଶିକାରରେ ଶ୍ରେଷ୍ଠ ଅସ୍ତ୍ର । ସବୁ ଜ୍ଞାନେନ୍ଦ୍ରିୟ ଭିତରେ ଆଖି ସବୁଠୁଁ ବେଶି ଶକ୍ତିଶାଳୀ । ତାର ଶ୍ରବଣ ଓ ଘ୍ରାଣଶକ୍ତି ଅପେକ୍ଷାକୃତ କମ୍ । ତେଣୁ ତାର ଶିକାର କରିବା ସମସ୍ତଙ୍କ କେନ୍ଦୁଆର ଓଲଟା—ଗୋଟିଏ ଗଛରେ ଶିକାର କଲାବେଳକୁ ଆଉ ଗୋଟିକ ବନ ବଦଳରେ ଶିକାର କରେ ।

ଚିତା ପଶୁଜଗତରେ ସବୁଠୁଁ ବେଗବାନ୍ । ସେ କଳା ମୃଗ, ଚିତାଳ ବା ହରିଣ ଓ ଅନ୍ୟାନ୍ୟ ବେଗଗାମୀ ହରିଣ-ପରିବାରର ସଦସ୍ୟ ସଙ୍ଗେ ତାଳ ଦେଇ ଛଅ ବା ଏପରିକି ସାତ କିଲୋମିଟରଯାକେ ଦଉଡ଼ି ତାଙ୍କୁ ମାରିପାରେ । ସେ ଆସ୍ତେ ଆସ୍ତେ ଲୁଚି-ଲୁଚି ଶିକାରକୁ ଲକ୍ଷ କରିବାଠାରୁ ଆରମ୍ଭ କରେ । ଯେତେବେଳେ ସେ ଶିକାରକୁ ଦେଖି-ପକାଏ, ପ୍ରାୟ ଘଣ୍ଟାକୁ ୧୦୦ କିଲୋମିଟର ବେଗରେ ସେ ଛୁଟିଯାଏ । ଶିକାରକୁ ଧରିବା ମାତ୍ରେ ତାକୁ ମାରିଦେଇ ଖାଇବା ଆରମ୍ଭ କରିଦିଏ । ସେ କଦାପି ଶିକାରକୁ ଅନ୍ୟ ଜାଗାକୁ ନେବାକୁ ବା ଲୁଚାଇ ରଖିବାକୁ ଚେଷ୍ଟା କରେ ନାହିଁ । ସେ ଖୁବ୍ ଅସନାମସନା କରି ଖାଏ, ସ୍ତରପଟେ ଖାଇବା ଜନ୍ତୁର ଅବଶିଷ୍ଟାଂଶ ଫୋପାଡ଼ିଥାଏ ।

ଦିନେ ଚିତା ଆମ ଦେଶରେ ପଶ୍ଚିମ ସମତଳ ଭୂମିଠାରୁ ଆରମ୍ଭ କରି ମଧ୍ୟ ଭାରତର ଉଚ୍ଚ ଭୂମି ଓ ଦାକ୍ଷିଣାତ୍ୟର ମାଳ ଅଞ୍ଚଳଯାକେ ଦେଖିବାକୁ ମିଳୁଥିଲା । ଆଜି ଚିତା ପ୍ରାୟ ବିଲୁପ୍ତ କହିବାକୁ ହେବ । ଶେଷ ଥର ଲାଗି ୧୯୫୧ ମସିହାରେ ଆନ୍ଧ୍ର ପ୍ରଦେଶରେ ଯୋଡ଼ିଏ ଚିତା ଦେଖାଯାଇଥିଲେ ।

ଆଗକାଳରେ ଶିକାର-ସୌଖିନ ରଜା ମହାରାଜାଏ ହାତୀ, ଶିକାରୀ କୁକୁର ଓ ବେଳେ-ବେଳେ ଏପରିକି ଚିତା ପାଳୁଥିଲେ । ଚିତା ସାହାଯ୍ୟରେ ଶିକାର କରିବା ଗୋଟିଏ ଭିନ୍ନ କଳା ଥିଲା । ଚିତା ଆଖିରେ ଅନ୍ଧପୁଟୁଳି ବାନ୍ଧି, ତାକୁ ଶଗଡ଼ ଉପରେ ବସାଇ ଜଙ୍ଗଲକୁ ନିଆଯାଉଥିଲା । ଶିକାର ପାଇଲାମାତ୍ରେ ତା ଆଖିରୁ ପୁଟୁଳି ଖୋଲାଯାଉଥିଲା । ଚିତା ସଙ୍ଗେ ସଙ୍ଗେ ଶିକାର ଆଡ଼କୁ ଛୁଟିଯାଉଥିଲା । ପବନବେଗରେ ଓ ଶୀଘ୍ର ଶିକାରର ବେକକୁ ଧରି ତାକୁ ପକାଇ ଦେଉଥିଲା । ଖଣ୍ଡିଏ ମାଉଁସ ପୁରସ୍କାର ରୂପେ ପାଇ ବାକିଟା ମାଲିକକୁ ଦେବାକୁ ସେ ତାଲିମ୍ ପାଉଥିଲା ।



ପୂର୍ଣ୍ଣବେଗରେ ଧାଉଁଥିଲାବେଳେ ଚିତା କି ସୁନ୍ଦର ଦିଶେ ! କିନ୍ତୁ ତାର ସ୍ୱଭାବଟା ବଡ଼ ଅପଣ୍ଡୁଣା । ବୋଲ ମାନୁଥିବାରୁ ଓ ଶୃଙ୍ଖଳା ରଖୁଥିବାରୁ ତାକୁ ତାଲିମ୍ ଦେବା ସହଜ । ସେ ଶୀଘ୍ର ତାର ମାଲିକକୁ ଚିହ୍ନିଯାଏ ଓ ତା ନାଁ ଶୁଣିଲେ ବୋଲ କରେ । ଚିତା ଅବଶ୍ୟ ପିଞ୍ଜରାରେ ରହିପାରେ; କିନ୍ତୁ ପିଞ୍ଜରାରେ ଥିଲାବେଳେ ସନ୍ତାନ ଦେବାକୁ ଅମଙ୍ଗ ହୁଏ ।

# ପୋଷାବିଲେଇ ଓ କଟାଶ

ପ୍ରାୟ ୨୫ ରକମର ବିଲେଇ ଅଛନ୍ତି । କେବଳ ଅଷ୍ଟ୍ରେଲିଆ, ୱେଷ୍ଟ ଇଣ୍ଡିଜ୍, ମାଡ଼ାଗାସ୍କର ଓ ଅନ୍ୟ କେତେକ ଦ୍ୱୀପକୁ ଛାଡ଼ିଦେଲେ ସେମାନେ ସବୁଠି ମିଳିବେ । କେବେ ଓ କିପରି ବିଲେଇକୁ ପୋଷାଗଲା ଜଣାନାହିଁ; କିନ୍ତୁ ଆବହମାନକାଳରୁ ସେ ଗୃହ-ପାଳିତ ବୋଲି ଜଣାଯାଏ । ଆମ ଦେଶରେ ସହର ଓ ନଗରମାନଙ୍କରେ ସ୍ମରଣକାଳଠାରୁ ବିଲେଇ ରହିଛନ୍ତି । ବିଲେଇର ନାନା ରଙ୍ଗ—ମାଟିଆ, କଳା, ଧଳା, ସୁନେଲି, ପାଉଁଶିଆ, ଶଙ୍ଖି । ଏସବୁ ସାଧାରଣ ପ୍ରକାରର । ବଣବିଲେଇ ଭିତରୁ କେହି କେହି ପଟାଳିଆ ଦାଗବାଲା, କେହି କେହି ଚିତା ଦାଗବାଲା ।

ଲାଙ୍ଗୁଡ଼କୁ ମିଶାଇ ବିଲେଇ ସାଧାରଣତଃ ୬୦ରୁ ୮୦ ସେ: ମି: ଯାକେ ଲମ୍ବ ହୁଏ । ଭୁଆ ବିଲେଇର ଓଜନ ଚାରିଠାରୁ ଆଠ କିଲୋଗ୍ରାମ୍; ମାଈ ବିଲେଇର ଓଜନ ଅଣ୍ଡିରା ବିଲେଇଠାରୁ ଦେଢ଼ କିଲୋଗ୍ରାମ୍ ଖଣ୍ଡେ କମ୍ ହୁଏ । ଉଚ୍ଚତା ୨୦ରୁ ୨୫ ସେ:ମି: ହେବ । ସେ ଦିନରେ ଶୁଏ ଓ ରାତିରେ ଚୁପ୍‌ଚୁପ୍ ପାଦ ଚିପି ଚିପି ଯାଇ ଶିକାର କରେ । ସେ ନିଜ ଦେହକୁ ବହୁତ ସଫାସୁତୁରା ରଖେ ଓ ତାର ଚାଲିଚଳଣ ବି ବେଶ୍ ପରିଷ୍କାର ପରିଚ୍ଛନ୍ନ । ଏସବୁ ତାର ଭଲ ଅଭ୍ୟାସ । ବିଲେଇମାନେ ଆକାର, ଗଠନ, ରଙ୍ଗ ଓ ପ୍ରକାରରେ ଅଲଗା ଅଲଗା

ହୋଇପାରନ୍ତି । କିନ୍ତୁ ଏସବୁ ଭଲ ଗୁଣ ସାଧାରଣତଃ ସମସ୍ତଙ୍କଠାରେ ଦେଖିବାକୁ ମିଳେ ।

ବିଲେଇର ସାମନା ପଂଝାରେ ପାଞ୍ଚଟି ଓ ପଛ ପଂଝାରେ ଚାରୋଟି ଲେଖାଏଁ ନଖ ଥାଏ । ଚାଲିଲାବେଳେ ନଖଗୁଡ଼ିକ ମାଂସ ଖୋଳଭିତରେ ବନ୍ଦ ହୋଇ ରହିଥାଏ । ତା ଆଖି ଯୋଡ଼ିକ ବଡ଼ ବଡ଼; କିନ୍ତୁ ନାକ ଓ କାନ ଛୋଟ ଛୋଟ । ତାର ପାଟି ଚେପ୍‌ଟା । ତା ଡୋଳା ଗୋଲ ନୁହେଁ; ଉପରୁ ତଳକୁ ଲମ୍ବାଳିଆ । ବିଲେଇ ସବୁ ଖାଏ । ଛୋଟ ଚଢ଼େଇ, ଗୁଣ୍ଡିଚ-ମୂଷା ଓ ମୂଷା ଯେମିତି ତାହାର ଖାଇବାଲାଗି ତିଆରି ହୋଇଛନ୍ତି । ସେ ପାଣି ପାଖ ମାଡ଼େ ନାହିଁ । ସେ କେବେ କୌଣସି ମଣିଷକୁ ଆକ୍ରମଣ କରିବା ଶୁଣାନାହିଁ । କିନ୍ତୁ ଯେବେ ଅକସ୍ମାତ୍ କେହି ତା ଉପରେ ମାଡ଼ି ଚାଲିଯାଏ, ସେ ତାକୁ କାମୁଡ଼ି-ରାମ୍ପୁଡ଼ି ପକାଏ ।

ପୋଷା ବିଲେଇ ତାର ସ୍ୱାଧୀନ ଢଙ୍ଗ ପାଇଁ ଖ୍ୟାତ । ମାଲିକ ପାଖରେ ଲାଙ୍ଗୁଡ଼ ଟେକି ମ୍ୟାଉଁ ମ୍ୟାଉଁ କରି ଖାଇବାକୁ ମାଗେ । ସେ ମାଲିକ ଗୋଡ଼ରେ ନିଜର ଦେହ ଘଷେ । କିନ୍ତୁ ଯେମିତି ପେଟଟି ପୂରିବ, ସେ ବାଟେ ବାଟେ ଚାଲିଯିବ । ବାସ୍ତବିକ୍ ବିରାଡ଼ିକୁ ପାଳିବାର ହେଉଛି; କିନ୍ତୁ ପୋଷା ମନାଇବାଟା ସଫଳ ହୋଇପାରିନାହିଁ । ବିରାଡ଼ି ଘରକୁ ଭଲ ପାଏ; ମାଲିକକୁ ନୁହେଁ । ବିରାଡ଼ିକୁ ଦୂରକୁ ନେଇ ଯେଉଁଠିପାରି ସେଠି ଛାଡ଼ିଦେଇ ଆସ, ସେ ଘରକୁ ବାଟ ଚିହ୍ନି ଫେରିଆସିବ ।

ଲର୍ଡ଼୍ସେଡ଼୍ ଜର୍ଜ, ଇଂଲଣ୍ଡର ଜଣେ ବିଖ୍ୟାତ ପ୍ରଧାନମନ୍ତ୍ରୀ ବିରାଡ଼ି ବିଷୟରେ ଗୋଟିଏ ସୁନ୍ଦର କାହାଣୀ କହନ୍ତି । ଥରେ ମହାତ୍ମା ଗାନ୍ଧୀ ତାଙ୍କ ପାଖକୁ ଯାଇଥିଲେ । ବୈଠକ୍-ଖାନାରେ ଯେମିତି ମହାତ୍ମା ବସିପଡ଼ିଲେ, ଗୋଟିଏ ବିଲେଇ କାହୁଁ ଆସି ତାଙ୍କ କୋଳରେ

ବଣଭୁଆ ବା କଟାସ



ବସିପଡ଼ନ୍ତି । ଯେତେବେଳେ ମହାତ୍ମା ସେଠି ବସିଥିଲେ, ବିଲେଇଟି ତାଙ୍କ କୋଳରେ ବସିଥାଏ । ସେ ଯେତେବେଳେ ଯିବାକୁ ଉଠିଲେ, ବିଲେଇ ବି ସେ ଘରୁ ବାହାରିଗଲା । ଲୟେଡ୍ ଜର୍ଜ ଲେଖିଛନ୍ତି, ସେ କେବେହେଲେ ସେ ବିଲେଇଟିକୁ ଦେଖି ନ ଥିଲେ ଏବଂ ସେ କୁଆଡ଼ୁ ଆସିଥିଲା ତାଙ୍କୁ ଜଣା ନ ଥିଲା ।

ବିଲେଇ ବର୍ଷକୁ ଦୁଇଥର ଛୁଆ ଦିଏ । ପ୍ରତିଥର ଚାରି କି ପାଞ୍ଚଟି ଛୁଆ ଜନ୍ମକରେ; କିନ୍ତୁ ଦୁଇଟାରୁ ବେଶି ପ୍ରାୟ ବଞ୍ଚନ୍ତିନି । ଜନ୍ମ ସମୟରୁ ବିଲେଇଛୁଆର ଆଖି ବନ୍ଦ ଥାଏ ପନ୍ଦରଦିନ ପର୍ଯ୍ୟନ୍ତ; ତାପରେ ଫିଟେ । ମାଆ ଏକାକୀ ତା ଛୁଆଙ୍କୁ ପାଳେ, ବାପର ପାଖ ମାଡ଼ିବାକୁ ସାହସ ନ ଥାଏ । ସେ କୁଆଡ଼େ ନିଜ ଛୁଆଙ୍କୁ ଖାଇଦିଏ । ମାଆ ଅନେକ ସମୟରେ ଛୁଆଙ୍କର ବେକକୁ କାମୁଡ଼ି ଏଠୁ ସେଠିକି ନେଇଯାଏ । ତିନିମାସଯାକେ ସେ ଛୁଆଙ୍କୁ ପାଳେ, ତାପରେ ତାଙ୍କୁ ଛାଡ଼ିଦିଏ । ବିଲେଇର ସାଧାରଣ ପରମାୟୁ ୧୫ ବର୍ଷ ।

ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ଆକାରର ବିଲେଇ ଅଛନ୍ତି । ଏମାନଙ୍କ ମଧ୍ୟରୁ ଇରାନ୍‌ର ପାର୍ସି ଲୁମ୍ବଲୁମିଆ ନୀଳଜାତି ଓ ଶ୍ୟାମ ( ଥାଇଲଣ୍ଡ୍ ) ଦେଶୀୟ ବିରାଡ଼ି ବିଖ୍ୟାତ ।

ଅନେକ ଧରଣର ବଣ ବିଲେଇ ଅଛନ୍ତି । ପୋଷା ବିଲେଇଠାରୁ ସେଗୁଡ଼ିକ ଆକାରରେ ବଡ଼ । ନେପାଳ ଓ ଆସାମରେ ଗୋଟିଏ ଜାତିର ବିଲେଇ ବଉଦିଆ ଚିତାବାଘ ଭଳି ଦେଖିବାକୁ । ଆଉ ପ୍ରକାରେ ବିଲେଇଙ୍କର କି ସୁନ୍ଦର ସୁନେଲି ଚିହ୍ନ ! ବିଲେଇର ସ୍ମୃତିଶକ୍ତି କମ୍ ଓ ସେ ପ୍ରତାଡ଼ିତ ହୋଇଥିବା, ଆଘାତ ପାଇଥିବା ବା ବିପଦର ସମ୍ମୁଖୀନ ହୋଇଥିବା କଥାମାନ ଶୀଘ୍ର ଭୁଲିଯାଏ । ଯେବେ ଭୁଲ୍‌ରେ ତମେ କୋଉ ବିରାଡ଼ି ଉପରେ ପାଦ ପକାଇଦେଲ ତାହେଲେ ସେ କାମୁଡ଼ିଦେଇ ପଳାଇଯିବ ସିନା; କିନ୍ତୁ ପରେ ପୁଣି ଆସି ଖାଇବାକୁ ମାଗିବ ।

Printed at Tarang Printers, Delhi

